ଜନଶିକ୍ଷା-ଗ୍ରନ୍ଥମାଳା—୨

# କୋଠାରୀ କମିଶନ
# ଓ
# ଓଡ଼ିଶାର ଶିକ୍ଷା ବ୍ୟବସ୍ଥା

ଲେଖକ—ଜନୈକ ଶିକ୍ଷାବତ୍

ଓଡ଼ିଶା ବୁକ୍ ଷ୍ଟୋର

ପ୍ରକାଶକ—
ଓଡ଼ିଶା ବୁକ୍ ଷ୍ଟୋର
କଟକ—୨

ନୂତନ ମୁଦ୍ରଣ
୧୯୬୭
ମୂଲ୍ୟ—ଏକଟଙ୍କା ମାତ୍ର

ମୁଦ୍ରାକର—
ଶ୍ରୀ କମଳଲୋଚନ ଗରବଡୁ
ଶ୍ରୀରାଧାରମଣ ପ୍ରେସ
କଟକ—୨

ଓଡ଼ିଶାର ଶିକ୍ଷାମନ୍ତ୍ରୀଙ୍କୁ—

ମହାଶୟ,

ଗତ ୨୫ ବର୍ଷ ଧରି ଏହି ଲେଖକ ଓଡ଼ିଶା ଦେଶରେ ଶିକ୍ଷା-ବ୍ୟବସ୍ଥାର ଯୁକ୍ତିଯୁକ୍ତତା, ଶିକ୍ଷା ଓ ଶିକ୍ଷକଙ୍କର ମାନ, ଏବଂ ଶିକ୍ଷାୟତନ-ମାନଙ୍କର ଗୌରବ କିପରି ବଢ଼ିବ, ଅର୍ଥାତ୍ ଶିକ୍ଷା ଜରିଆରେ ଏକ ନୂତନ ସଭ୍ୟ, ସଂସ୍କୃତିବାନ ଓ ଶକ୍ତିଶାଳୀ ଜାତି କିପରି ବାହାରିବ, ସେହି ଲକ୍ଷ୍ୟରେ ନିରବଚ୍ଛିନ୍ନ ଉଦ୍ୟମ କରି ଆସିଛି । 'Citizen Education', 'ଶିକ୍ଷା, ଶିକ୍ଷକ ଓ ଶିକ୍ଷାୟତନ', 'ଶିକ୍ଷାର କ, ଖ ଓ କାର୍ତ୍ତିକ', 'ଶିକ୍ଷାବିଦ୍‌ର ଗାଥା', 'Dreams in Education' 'ସ୍ୱାଧୀନ ଭାରତର ଛାତ୍ର ସମସ୍ୟା' ଇତ୍ୟାଦି ପୁସ୍ତକ ଏବଂ ବହୁ ସମସାମୟିକ ପ୍ରବନ୍ଧ ଦେଇ ଏହି ଲେଖକ ତାର ଜାତିକୁ, ଏକମାତ୍ର ଜାତି-ଗଠନ-ସଂସ୍ଥା, 'ଶିକ୍ଷା-ଜଗତ' ସଂପର୍କରେ ଜାଗ୍ରତ ଓ ସଚେତନ ହେବା ପାଇଁ ଚେଷ୍ଟା କରି ଆସିଛି ; ୨୫ ବର୍ଷ ତଳେ ଶିକ୍ଷା ଉପରେ ଓଡ଼ିଆ ଭାଷାରେ ପ୍ରଥମ ସାଧାରଣ ପୁସ୍ତକ "ଶିକ୍ଷା, ଶିକ୍ଷକ ଓ ଶିକ୍ଷାୟତନ" ଲେଖି ପ୍ରକାଶକଙ୍କ ଦ୍ୱାରସ୍ଥ ହେଲାବେଳେ, ସେ ସ୍ୱାଭାବିକ ଭାବରେ ଛାପିବାକୁ କୁଣ୍ଠା ପ୍ରକାଶ କରିଥିଲେ । ଗଳ୍ପ-ଉପନ୍ୟାସ ଯୁଗରେ ଶୁଷ୍କ ଶିକ୍ଷା-ସମ୍ପୃକ୍ତ ପୁସ୍ତକ କିଏ କିଣି ପଢ଼ିବ ? ଯାହା ହେଉ, "ଶିକ୍ଷା, ଶିକ୍ଷକ ଓ ଶିକ୍ଷାୟତନ" ର ପ୍ରଥମ ସଂସ୍କରଣ ଏକା ବର୍ଷକେ ଶେଷ ହୋଇ ଯାଆନ୍ତେ ଓଡ଼ିଶାରେ ପୁସ୍ତକ ବିକ୍ରୟର କେବଳ ନୁହେଁ, ଶିକ୍ଷା ପାଇଁ ଯେ ଜନଚେତନା ଉନ୍ମୁଖ ଅଛି ତାର ମଧ୍ୟ ଏକ ସନ୍ତୋଷଜନକ ପରିଚୟ ମିଳିଲା । ଏବେ ପ୍ରକାଶକେ, ଶିକ୍ଷା-ସମ୍ପୃକ୍ତ ପୁସ୍ତକ ଛାପିବା ପାଇଁ ଆଗ୍ରହୀ ।

କିନ୍ତୁ ଜନଚେତନା ଓ ଶାସନ, ଉଭୁକର ଭାବ ଓ ବ୍ୟୁରୋକ୍ରାଟୀର ଯୋଜନା କି ଏକା ବାଟରେ ଗତିଶୀଳ ? Dreams in Education ପୁସ୍ତକରୁ ଆପଣ ସହଜରେ ଦେଖି ପାରିବେ ଯେ, ଏହି ଲେଖକର ଗତ ପଚିଶି ବର୍ଷର ନାନା କ୍ଷେତ୍ରରେ ନାନା ପରୀକ୍ଷା ଏବେ କୋଠାରି କମିସନ୍ ଦୃଢ଼ ଭାବରେ ସୁପାରିଶ୍ କରିଛନ୍ତି, କିନ୍ତୁ ଯାହା ପାଇଁକି ଏହି ଲେଖକ ଦେଶ, ସରକାର ଓ ଜାତିଠାରୁ ପୁରସ୍କାର ପାଇ ଆସିଛି କେବଳ ତାଡ଼ନା, ତର୍ଜନ ଓ ପ୍ରତାଡ଼ନା ମାତ୍ର । ପୁଣି ଅଧିକ ବିସ୍ମୟକର ବ୍ୟାପାର ଏହି ମଧ୍ୟ ଦେଖିଲି ଯେ, ଯେଉଁମାନେ ଶିକ୍ଷା ବିଷୟରେ କିଛି ଭାବ ନାହାନ୍ତି, କେବଳ ଅର୍ଡ଼ର-ପାଳନର ରିକ୍ସାଟି ମାତ୍ର ଚଳେଇବାକୁ ଜୀବନର ଏକମାତ୍ର ପରମ କାମ୍ୟ ବୋଲି ଧରି ନେଇଛନ୍ତି, ସେମାନେ

ସ୍କୁଲ୍-ଗସ୍ତାର ଗୋଟାଏ ବନ୍ଧୁକୁ ସ୍ୱାଗତକ ଭାବରେ ଆସିଗଲା ମାତ୍ରେ, ଏ ଦେଶରେ ବନ୍ଦିତ ହେଉଛନ୍ତି "ଶିକ୍ଷାବିତ୍" ଭାବରେ । ଏହି ମହତ୍ ବୃତ୍ତିର ଶସ୍ତା ଓ ଅଯଥାର୍ଥ ଅପବ୍ୟବହାର ଏହି ହତଭାଗ୍ୟ ଦେଶରେ ଯେପରି ହୋଇ ଚାଲିଛି, କୌଣସି ସଭ୍ୟ ଦେଶରେ ତାହା କଳ୍ପନା କରାଯାଇ ନ ପାରେ ।

ପ୍ରାୟ ଦୁଇବର୍ଷ ତଳେ ଥରେ ଢେଙ୍କାନାଳର କପିଳାସ ଶୋଭା-ବାହରେ ଜଣୈକ ସ୍ଥାନୀୟ ଏମ୍. ଏଲ୍. ଏ. ଙ୍କୁ ଭେଟିଥିଲି । ସମଗ୍ର ଏକ ସନ୍ଧ୍ୟା, ଦେଶର ଓ ଶିକ୍ଷାର ଅବସ୍ଥା ନେଇ ଆଲୋଚନାରେ କଟି ଯାଇଥିଲା । ସେହି ଭିତରେ ସେ ହଠାତ୍ କହିଲେ ଯେ, "ଏ ଦେଶର ଶିକ୍ଷକମାନେ ଜାତି ପ୍ରତି ତାଙ୍କର କର୍ତ୍ତବ୍ୟ କରି ନାହାନ୍ତି ।" ମୁଁ ତାଙ୍କୁ କହିଥିଲି "ଦେଖନ୍ତୁ, ଶିକ୍ଷାବିତ୍‌ଙ୍କୁ ଯେଉଁଠି ଶିକ୍ଷାମନ୍ତ୍ରୀ ବା ମୁଖ୍ୟ ମନ୍ତ୍ରୀଙ୍କ ବାରଣ୍ଡାରେ ନିଜର ସ୍ଥିତି ପାଇଁ ଅନୁସରଣ କରିବାକୁ ପଡ଼ିଥାଏ, ସେ ଦେଶରେ ଶିକ୍ଷାବିତ୍ କିପରି ଜାତି ଫିଟେଇବ ବୋଲି ଆପଣ ଆଶା କରନ୍ତି ? ସ୍ୱାଧୀନତା ପରେ ଏ ଦେଶର ଓ ଜାତିର ସବୁ ନାଡ଼ିଯାକ ପୁଞ୍ଜୀଭୂତ ହୋଇ ରହିଲା ପଲିଟିସିଆନ୍ ମାନଙ୍କ ହାତରେ,—ଆପଣମାନଙ୍କ ହାତରେ । ଆପଣମାନେ ତେଣୁ, ଅନ୍ୟକୁ ଦୋଷ ଦେବା ଉଚିତ ନୁହେଁ ।"

ମାନନୀୟ ମନ୍ତ୍ରୀ ମହାଶୟ, ଆଜିକୁ ଶହେବର୍ଷ ପରେ ଯେତେ-ବେଳେ ଏ ଜାତିର ଇତିହାସ ଆଲୋଚିତ ହେବ, ସେତେବେଳେ ହୁଏତ କେହି ନିରପେକ୍ଷ ଆଲୋଚନାକାରୀ କହି ପାରନ୍ତି ଯେ,—ସ୍ୱାଧୀନତା ପରେ ଓଡ଼ିଶା ଦେଶରେ ଅନ୍ତତଃ ଗୋଟାଏ ଲୋକ ଜାତି ଓ ସରକାରକୁ ଶିକ୍ଷା ଦିଗରେ ନିର୍ଭୀକ ଭାବରେ ଉପଦେଶ ଦେବାକୁ ପଶ୍ଚାତ୍‌ପଦ ହେଉ ନଥିଲା, ଯଦିଓ ସେଥିପାଇଁ ସେ ଜୀବନରେ କ୍ଷମତାସୀନ ବ୍ୟକ୍ତି ବା ଗୋଷ୍ଠୀଠାରୁ ବାରମ୍ବାର ଲାଞ୍ଛିତ, ଅପମାନିତ ହୋଇଥିଲା କେବଳ ନୁହେଁ, ତାର ଯାହା ପ୍ରାପ୍ୟ, ତାହା ମଧ୍ୟ ତା'ଠୁ କାଢ଼ି ନିଆ ଯାଇଥିଲା ।"

ମାନନୀୟ ମହାଶୟ, ଏହି ସମସ୍ତ ଲାଞ୍ଛନାର ଲାଞ୍ଛନ ଅଙ୍ଗରେ ବୋହି ମଧ୍ୟ, ଆଜି ପୁଣି ସେହି ଲୋକ ଜୀବନର ଅପରାହ୍ଣରେ ଶିକ୍ଷା ସମ୍ପର୍କରେ ତାର ପ୍ରିୟ ଜାତିପାଇଁ ସାମାନ୍ୟ କେତେକ ବାଣୀ ଆପଣଙ୍କ ଆଗରେ ଥୋଇ ଦେବାକୁ ଯାଉଛି । ଏହାହିଁ ତାର ଜୀବନର ମିସନ୍ ଓ ଆନନ୍ଦ । ଆପଣ ପଢ଼ିଲେ ସେ ନିଶ୍ଚୟ ଖୁସୀ ହେବ । ନଚେତ୍ ନାସ୍ତିମୟ ଏହି ଜୀବନରେ, ଆଉ ଅଧିକା ଗୋଟାଏ 'ନାସ୍ତି'ରେ କି ଯାଏ ଆସେ ? ଇତି ।

ଜଣୈକ ଶିକ୍ଷାବିତ୍

# କୋଠାରୀ କମିଶନ୍ ଓ ଓଡ଼ିଶାର ଶିକ୍ଷା ସମସ୍ୟା

( ୧ )

## ଆମର ଶୈକ୍ଷିକ ମାନଦଣ୍ଡ

ରାଜନୀତି କ୍ଷେତ୍ରରେ ଗୋଟିଏ ପରିହାସ ଅଛି ଯେ, "କିଛି କରିବାକୁ ଇଚ୍ଛା ନ ଥିଲେ ଗୋଟାଏ କମିଟି ଗଠନ କରିଦିଅ ।"

ସ୍ୱାତନ୍ତ୍ର୍ୟ-ପର ଭାରତବର୍ଷରେ ଏହି ପରିହାସ ଅନ୍ତତଃ ଅନ୍ୟ କୌଣସି କ୍ଷେତ୍ରରେ ନ ହେଉ, ଆମ ଦେଶର ଶିକ୍ଷା କ୍ଷେତ୍ରରେ ସୁପ୍ରମାଣିତ ହୋଇ ସାରିଲାଣି ।

କାରଣ, ସ୍ୱାଧୀନତା ପରେ, ମାତ୍ର କୋଡ଼ିଏ ବର୍ଷ ଭିତରେ, ଭାରତ ସର୍କାର ତିନି ତିନୋଟି ଶିକ୍ଷା-କମିସନ ବସାଇ ସାରିଲେଣି । ସେ କମିସନ୍ ମାନଙ୍କ ପିଛା କୋଟି କୋଟି ଟଙ୍କା ହୁଏତ ଖର୍ଚ୍ଚ ହୋଇଗଲାଣି । ଅଥଚ, ସେମାନେ ଯେଉଁ ଢିମି-ଢିମିକିଆ ବଡ଼ ବଡ଼ ରିପୋର୍ଟ ସବୁ ପ୍ରସ୍ତୁତ କରି ସେଥି ଘରକୁ ଫେରିଛନ୍ତି, ସେ ଗୁଡ଼ିକୁ ବୁଝିବାକୁ ଏବଂ ଏପରିକି ପୂରା ପଢ଼ିବାକୁ ମଧ୍ୟ ଏ ଦେଶରେ ବେଶୀ ଲୋକ ଅଛନ୍ତି ବୋଲି କହି ହେବନି, ଅନ୍ତତଃ ଏହି ଓଡ଼ିଶା ରାଜ୍ୟରେ । ରାଧାକୃଷ୍ଣନ୍-ରିପୋର୍ଟଟି ପୂରା ପଢ଼ା ନ ସରୁଣୁ କୋଠାରୀ କମିସନ୍ ବସିଲା ଏବଂ ସେହି କୋଠାରୀ କମିସନ୍ ରିପୋର୍ଟ, ଯାହା ଆମର ପ୍ରାଇମେରୀଠାରୁ ଇଉନିଭରସିଟି ଯାଏଁ ସମସ୍ତ ଶିକ୍ଷା-ସମସ୍ୟାର ସମାଧାନ କରି ଦେଇପାରିବ ବୋଲି ଆଶା କରା ଯାଉଥିଲା, ତାହା ବାସ୍ତବରେ, ଏକ ଦୁର୍ଭେଦ୍ୟ ଜଙ୍ଗଲ ରୂପେ ସାଧାରଣ ପାଠକ ଆଗରେ ଦଣ୍ଡାୟମାନ । ଏହାର ସାରକଥାହିଁ ଦୁଇଶ ପୃଷ୍ଠା ।

ସେ ଯାହା ହେଉ, ଯେତେବେଳେ ଆମର ଟଙ୍କା ଖର୍ଚ୍ଚ ହୋଇ ଆମର ସର୍କାରଙ୍କ ଦ୍ୱାରା ଏ ଗ୍ରନ୍ଥ ପ୍ରକାଶିତ ହୋଇଛି ଏବଂ ଯେତେବେଳେ ଆମେ ଦେଖୁଛୁ ଯେ ଆମର ଶିକ୍ଷା କ୍ଷେତ୍ର ଆଜି ଶିକ୍ଷାକ୍ଷେତ୍ର ହୋଇ ନାହିଁ,

ଏହା ଆଜ ଏକ ଦିଗରେ ଏକ ରାଜନୈତିକ ରଣ-କ୍ଷେତ୍ର ଓ ଅନ୍ୟ ଦିଗରେ ବିଦ୍ୟା ଚର୍ଚ୍ଚାର କେବଳ ଲଜ୍ଜା ଓ ଅପମାନ ରୂପେ ଦଣ୍ଡାୟମାନ ହେଲଣି, ଏବଂ ଆମକୁ ଦୃଢ଼ତାର ସହିତ ଏ ଅଧଃପତନକୁ ରୋକିବାକୁ ହେବ, ନଚେତ୍ ଆମେ ଅତୀତରେ ହୁଏତ ଆମର ଜାତୀୟ ଗୌରବ କଥା ଗୁଡ଼, ଆମର ସଦ୍ୟ—ପ୍ରାପ୍ତ ସ୍ୱାଧୀନତା ମଧ୍ୟ ହରେଇ ପାରୁଁ, ତେବେ ଆମେ ସମସ୍ତେ ମିଶି ନିରପେକ୍ଷ ଭାବରେ ବିଚାର କରିବା ଉଚିତ, କୋଠାରି କମିଶନ ରିପୋର୍ଟ ଆମକୁ ଏ ଦିଗରେ କିଛି ବାଟ ଦେଖାଉଛନ୍ତି କି ନାହିଁ ।

## ଆନ୍ତର୍ଜାତୀୟ ମାନଦଣ୍ଡ

ପାଠକେ ଏହି କଥାଟିକୁ ମୂଳତତ୍ତ୍ୱ ଭାବରେ ସ୍ମରଣ ରଖିବେ ଯେ, ଆଜ ପୃଥିବୀ ପୃଷ୍ଠରେ କୌଣସି ଜାତି ଓ ଦେଶ ଆତ୍ମ-ସମ୍ପୂର୍ଣ୍ଣ ବା ଆତ୍ମ-ପ୍ରତିଷ୍ଠ ରହି ନ ପାରେ । ମାତ୍ର ପଚିଶ ବର୍ଷ ତଳେ ଆଫ୍ରିକାର ଯେଉଁ ଜାତିସବୁ ଗରିଲା-ଓରାଂଉଟାଂ ପରି ଗଛ ଉପରେ ବସବାସ କରୁଥିଲେ, ଆଜ ସେମାନେ ନ୍ୟୁୟର୍କର ଜାତି-ସଂଘ-ଅଟ୍ଟାଳିକାରେ ଇଂଲଣ୍ଡ, ରୁଷିଆ, ଭାରତବର୍ଷ ଓ ଯୁକ୍ତରାଷ୍ଟ୍ର ସହିତ ସମାନ ଆସନ ଓ ସମ୍ମାନ ପାଉଛନ୍ତି । ସେଠି ଭାରତର ପ୍ରତିନିଧି ଇଂରାଜୀରେ ବକ୍ତୃତା ଦେଲାବେଳକୁ କାଲିର ବର୍ବର ବାସୁଟୋ, ଫ୍ରେଞ୍ଚରେ ବକ୍ତୃତା ଦେଉଛି । ଅର୍ଥାତ୍ ଆଜ ଆମେ ବାଧ୍ୟ ହୋଇ ଆଉ 'ଜାତୀୟ' ରହି ପାରିବାନି, ହେବା "ଆନ୍ତର୍ଜାତୀୟ" । ଆମେ ଯାହା ଭାବିବା, ଯେପରି ସ୍ୱପ୍ନ ଦେଖିବା, ଯେପରି କର୍ମ କରିବା, ସେ ସବୁ ଆନ୍ତର୍ଜାତୀୟ ମାନଦଣ୍ଡରେ ବିଚାରିତ ହେବା ଉଚିତ । ଆନ୍ତର୍ଜାତୀୟ ଦର୍ପଣରେ ଆମର ପ୍ରତିବିମ୍ବ ଆମେ ଦେଖିଲେହିଁ ଜାଣି ପାରିବା ଯେ, ଅନ୍ୟମାନଙ୍କ ତୁଳନାରେ ଆମର ଅବସ୍ଥା କଣ ବା ଆମେ କେଉଁଠି ? କୌଣସି ଏକ ଘୋର ମଫସଲ ଗାଁ ତୁଳନାରେ ଆମର ଅନେକଙ୍କୁ କଟକ ମଧ୍ୟ ସ୍ୱର୍ଗ ବୋଧ ହୋଇପାରେ । କିନ୍ତୁ ଜାପାନ ବା ସୁଇଜରଲଣ୍ଡର ସମସ୍ଥାନୀୟ ସହର କଥା ଛାଡ଼ିଦିଅ, ସେହି ସବୁ ସଭ୍ୟ, ଉନ୍ନତ ରାଜ୍ୟର ଏକ ଏକ ଆଭ୍ୟନ୍ତରୀଣ ଗାଁ ତୁଳନାରେ ଐତିହାସିକ ଓଡ଼ିଆ ଜାତିର ସାଂସ୍କୃତିକ-କେନ୍ଦ୍ର କଟକ ନଗର ଏକ ଜାତୀୟ ଲଜ୍ଜା ଓ ଅପମାନ ଛଡ଼ା ଆଉ କିଛି ନୁହେ ଏବଂ ତାହାହିଁ କଟକ ନଗରର ସଠିକ ଚିତ୍ର । କାରଣ, ତାହାହିଁ ଆନ୍ତଜାତୀୟ ଚିତ୍ର

ଏବଂ ଆମର ଶାସନିକ, ରାଜନୈତିକ ଓ ଶୈକ୍ଷିକ ସକଳ ବ୍ୟାପାର ଏହି ଆନ୍ତର୍ଜାତୀୟ ମାନଦଣ୍ଡରୁହିଁ ବିଗୃହୀତ ଓ ବ୍ୟବସ୍ଥିତ ହେବା ଉଚିତ ।

ଶିକ୍ଷା କ୍ଷେତ୍ରରେ ଆମେ ସ୍ୱାଧୀନତା ପରେ ଗାଏ ଗାଏଁ ହାଇସ୍କୁଲ୍, କଲେଜ ଏବଂ ଏପରି କି ବିଶ୍ୱବିଦ୍ୟାଳୟ ମଧ୍ୟ ଠିଆ କରାଇ ଡିଣ୍ଡିମ ବଜାଇ ବସିଲୁ ଯେ, ଆମେ 'ଉଚ୍ଚଶିକ୍ଷା'ର ପ୍ରସାର କରୁଛୁ । କିନ୍ତୁ ଏହି ତଥା କଥିତ 'ଉଚ୍ଚଶିକ୍ଷା'ର ଦ୍ରୁତ ପ୍ରସାରର ପରିଣାମ ହୋଇଛି ଦେଶବ୍ୟାପୀ ଘୋର ଛାତ୍ର-ବିଶୃଙ୍ଖଳା, ଯାହା କି ଏ ଦେଶରେ ସୁଶାସନ ପ୍ରତି ଏକ ଆତଙ୍କ ହୋଇ ଉଠିଲଣି । ତେଣେ ବିଦ୍ୟାର ମାନଦଣ୍ଡ କ୍ରମାଗତ ତଳକୁଁ ତଳକୁ ଖସି ଆଜି ଏପରି ତଳେ ଆସି ପହଞ୍ଚିଲଣି ଯେ, ତଥା କଥିତ କଲେଜ ଲେକ୍‌ଚରର ମଧ୍ୟ ଦ'ପଦ ଇଂରାଜୀ ବା ଓଡ଼ିଆ ବିଶୁଦ୍ଧ ଭାବରେ କହି-ଲେଖିପାରୁ ନାହାନ୍ତି । ତଳିଆଙ୍କ ଅଯୋଗ୍ୟତା କଥା ନ କହିଲେ ହେଲା । କାଲି ଯେଉଁମାନେ ଆମର ଗାଁ ଗହଳରେ ଗାଈ-ମଇଁଷି-ଗୋଠ ବା ଧାନ-ମୁଗ-ବିଲର କାଦୁଅ-ପଙ୍କରେହିଁ କାମ କରିବେ, ସେମାନେ ଆଜି ଷ୍ଟେନ୍‌ଲେସ-ଷ୍ଟିଲର ଥାଳି-ଗିନା ଦାବୀ କରନ୍ତି ଏବଂ ତାହାହିଁ ଏ ଦେଶରେ ଆଜି "ଛାତ୍ର-ଆନ୍ଦୋଳନ" ଏବଂ ତାକୁ ଡରି ଏ ଦେଶର ସରକାର ତେଣେ ଦେଶର ଲକ୍ଷ ଲକ୍ଷ ଲୋକ ଅନାହାର-କ୍ଲିଷ୍ଟ ରହିଥିଲେହେଁ, ୪।୫ ଲକ୍ଷ ଟଙ୍କା ବ୍ୟୟରେ ସେ ସବୁ ବଣ୍ଟାଚ ଭାବରେ ଯୋଗାଇ ବି ଦେଇ ପାରନ୍ତି ।

ତେଣୁ ଦେଖା ଯାଉଛି ଯେ, ଆମର ଶିକ୍ଷା କ୍ଷେତ୍ରରେ ଆଜି ବ୍ୟାପକ ଓ ଚରମ ବ୍ୟର୍ଥତା । ସବୁକଥା ବିଚାରିବାର ସ୍ଥାନ ଏ ନୁହେ । ତେଣୁ କେବଳ କେତେକ ମୁଖ୍ୟ ସମସ୍ୟା ବିଚାର କରିବା । ମୁଖ୍ୟତମ ସମସ୍ୟା ହେଲା—ସ୍ୱାଧୀନତା ପରେ ଏ ଦେଶରେ ବିଦ୍ୟାର କ୍ରମିକ ଅଧୋଗମନ । ଆମ ପିଲେ ଯଦି ଏତେ ଏତେ ଟଙ୍କା ଖର୍ଚ୍ଚ କରି ଯେଉଁ ମୂର୍ଖକୁ ସେହି ମୂର୍ଖ ରହିଲେ, ତେବେ ସ୍କୁଲ୍ କଲେଜ ଥାଇଁ କଣ, ନ ଥାଇ କଣ ?

## ନିମ୍ନ ମାନଦଣ୍ଡ

କୋଠାରି କମିସନ ଆମର ବର୍ତ୍ତମାନର ମୋଟାମୋଟି ଶୈକ୍ଷିକ ମାନଦଣ୍ଡ ଉପରେ କହିଛନ୍ତି ଯେ (ପୃ ୪୧-୪୨)—

"ଆନ୍ତର୍ଜାତୀୟ ତୁଳନାରେ ଆମର ଶୈକ୍ଷିକ ଅବସ୍ଥା ଅତ୍ୟନ୍ତ ଅସନ୍ତୋଷଜନକ । ଏପରି କି ଆମର ବିଶ୍ୱବିଦ୍ୟାଳୟ ସ୍ତରରେ ଏପରି ବହୁତ କାମ ହେଉଛି, ଯାହା ହାଇସ୍କୁଲମାନଙ୍କରେହିଁ ଅନ୍ୟ ଦେଶ-ମାନଙ୍କରେ ହୋଇଥାଏ ଏବଂ ଆମର ହାଇସ୍କୁଲମାନଙ୍କର ଅଧିକାଂଶ ପାଠ, ଅନ୍ୟ ଦେଶମାନଙ୍କରେ ପ୍ରାଇମେରୀ ସ୍କୁଲମାନଙ୍କରେ ହୋଇଥାଏ । × × × × ଆଜି ଆମ ଦେଶର କଳା ଓ ବିଜ୍ଞାନର ଗ୍ରାଜୁଏଟ-ମାନେ ଇଉରୋପ-ଆମେରିକାର ସାଧାରଣ ମାଟ୍ରିକୁ୍ୟଲେଟମାନଙ୍କ ସହିତହିଁ ତୁଳିତ ହେଉଛନ୍ତି 'ଏବଂ ସେ ସବୁ ବିଶ୍ୱବିଦ୍ୟାଳୟମାନଙ୍କରେ ସେମାନଙ୍କୁ ପୁଣି ଡିଗ୍ରୀ-କୋର୍ସର ପ୍ରଥମ ବର୍ଷରେହିଁ ଗ୍ରହଣ କରାଯାଉଛି ।"

ଆମ ନିଜ କମିସନ୍ ସାରା ଦେଶ ବୁଲି, ଯେତେବେଳେ ଆମ ଦେଶର ଶିକ୍ଷା ବ୍ୟବସ୍ଥାର ଏହି ଲଜ୍ଜାଜନକ ଚିତ୍ର ଆମ ଆଗରେ ଥୋଇଛନ୍ତି, ସେତେବେଳେ ଆମର ପ୍ରଥମ କର୍ତ୍ତବ୍ୟ କ'ଣ ହେବା ଉଚିତ୍ ? ନୂଆ ନୂଆ କଲେଜ ଓ ବିଶ୍ୱବିଦ୍ୟାଳୟ ଟିଆ କରାଇ ଦେଶରେ ଧନ-ଦାରିଦ୍ର୍ୟ ସହିତ ଜ୍ଞାନ-ଦାରିଦ୍ର୍ୟକୁ ବାଣ୍ଟି ଚାଲିବା ନା ଆଗ ପ୍ରାଇମେରୀ ଓ ସେକେଣ୍ଡାରୀ ସ୍ତରରୁ ଆମ ଶିକ୍ଷାକୁ ଆନ୍ତର୍ଜାତୀୟ ସ୍ତରକୁ ଉଠେଇବାକୁ ଚେଷ୍ଟା କରିବା ?

ଆଜି ଏ ଦେଶରେ 'ସ୍ୱାଧୀନତା'ର ସୋମରସ ପାନ କରିବା ଫଳରେ ଚାରିଆଡ଼େ ଜାତୀୟ ଅଧୋଗତି ଦେଖା ଦେଲା ବେଳେ ଆମେ ସେହି କୋଠାରି କମିସନ ରିପୋର୍ଟରୁ ମଧ୍ୟ ପାଇବା ଯେ, (ପୃ ୪୨) "ବିଶେଷ କରି, ଦ୍ୱିତୀୟ ବିଶ୍ୱଯୁଦ୍ଧ ପରଠାରୁ ଅଗ୍ରଗାମୀ ଦେଶମାନେ ଶିକ୍ଷାକ୍ଷେତ୍ରରେ ପୂର୍ବ ଅପେକ୍ଷା ମଧ୍ୟ ବିସ୍ମୟକର ଉନ୍ନତି ଦେଖାଇ ଚାଲିଛନ୍ତି !"

## କିମାଶ୍ଚର୍ଯ୍ୟଂ !

ଯିଏ ଉନ୍ନତ ଥିଲେ, ଯିଏ ଦ୍'ଦୁଇଟା ବିଶ୍ୱଯୁଦ୍ଧରେ ବିଧ୍ୱସ୍ତ ହୋଇ ମଧ୍ୟ ପୁଣି ଦ୍ରୁତଗତିରେ ଆଗେଇ ଚାଲିଲେଣି, ଅଥଚ ୬୦ ବର୍ଷ ତଳେ ଭାରତବର୍ଷର ଯେଉଁ ସମସାମୟିକ ଶିକ୍ଷା ବ୍ୟବସ୍ଥାକୁ ମହାମତି ଗୋଖ୍‌ଲେ ଇଂଲଣ୍ଡର ଶିକ୍ଷା-ଷ୍ଟାଣ୍ଡାର୍ଡ଼ଠାରୁ ବହୁ ନିମ୍ନରେ ଅଛି

ବୋଲି ବର୍ଣ୍ଣନା କରି ସେହି ଉଦାର ଜାତୀୟତାବାଦୀ ନେତା ମଧ୍ୟ, ଇଂଲଣ୍ଡରୁ ଶିକ୍ଷାବିତ୍ ଓ ଅଧ୍ୟାପକ ସବୁ ଘରଚକୁ ଅଣାଇ ଏ ଦେଶର ଶିକ୍ଷାର ମାନଦଣ୍ଡକୁ ଉପରକୁ ଉଠେଇବାର ପ୍ରସ୍ତାବ ଦେଇଥିଲେ, ଯେ ଶିକ୍ଷା ବ୍ୟବସ୍ଥା ଆଜି ଉପରକୁ ଉଠିବା ପରିବର୍ତ୍ତରେ ତଳକୁ ଖସି ଖସି, ଏପରି ନିମ୍ନ ଅବସ୍ଥାରେ ପହଞ୍ଚିଲାଣି ଯେ, ଆଜି ଏଣିକି ମୂର୍ଖ ଓ ଶିକ୍ଷିତ ଭିତରେ ଭେଦହିଁ ଏ ଦେଶରୁ ଲିଭିଯିବା ଉପରେ ।

ଏ ରୋଗର ନିଦାନ କେଉଁଠି ?

କ'ଣ ଆମକୁ କରିବାକୁ ହେବ ?

ନା' ଓଟ-ପକ୍ଷୀ ମରୁବାଲିରେ ମୁଣ୍ଡ ପୋତି ଦେଇ ନିରାପଦ ହେଲି ବୋଲି ଯେପରି ପରମ ମୂର୍ଖତାରେ ଭାବି ନିଏ, ଆମେ କଣ ସେହିପରି ତୃତୀୟ-ଶ୍ରେଣୀର ଶିକ୍ଷକ ଓ ଅଧ୍ୟାପକଙ୍କୁ ନେଇ କୌଣସି ପ୍ରକାରେ-ପଢ଼ୁ-ନ ଥିବା ଲକ୍ଷ ଲକ୍ଷ ଅପଦାର୍ଥ, ମାଟ୍ରିକୁଲେଟ୍ ଓ ଗ୍ରାଜୁଏଟ୍ ବାହାର କରି, ଭାବୁଥିବା ଯେ ଆମେ 'ଉଚ୍ଚଶିକ୍ଷା' ପ୍ରସାର କରୁଛୁ ? ଏ ଆତ୍ମ-ପ୍ରତାରଣା କେତେ ଦିନ ଚାଲୁ ରହି ପାରେ ?

( ୨ )

## ଭାଷା ଓ ବିଦ୍ୟା

ଆମ ନିଜ କମିସନ୍ ଯେତେବେଳେ ବିଶ୍ୱ ସମକ୍ଷରେ ବିନା ସଙ୍କୋଚରେ ଆମର ସର୍କାରି ରିପୋର୍ଟରେ ଘୋଷଣା କରି ବସିଲେଣି ଯେ ଆମ ବିଶ୍ୱବିଦ୍ୟାଳୟର ଷ୍ଟାଣ୍ଡାର୍ଡ୍ ସଭ୍ୟ ଦେଶମାନଙ୍କର ହାଇସ୍କୁଲର ଓ ଆମ ହାଇସ୍କୁଲର, ସେ ଦେଶମାନଙ୍କର ପ୍ରାଇମେରୀ ସ୍କୁଲମାନଙ୍କ ସହିତ ତୁଳନୀୟ, ସେତେବେଳେ ଏହା ଆଉ ବିବାଦୀୟ ସ୍ତରରେ ନାହିଁ ଏବଂ ଆମେ ସମସ୍ତେ ଚିନ୍ତିତ ଓ ଲଜ୍ଜିତ ହୋଇ ପ୍ରତିକାରର ବ୍ୟବସ୍ଥାରେ ଲାଗି ପଡ଼ିବା ଉଚିତ ।

ଲକ୍ଷ ଲକ୍ଷ ସାର୍ଟିଫିକେଟ-ସର୍ବସ୍ୱ ତୃତୀୟ ଶ୍ରେଣୀ ମାଟ୍ରିକୁଲେଟ୍ ଓ ବି. ଏ. କୌଣସି ଜାତି ବା ଦେଶର ସାମାନ୍ୟତମ ଉନ୍ନତି ବିଧାନ କରି ପାରିବେ ନାହିଁ । ବରଂ ସେମାନେ ସେ ଦେଶ ଓ ଜାତିର

ବିରାଟ ଗଳଗ୍ରହ ହୋଇ ସେ ଦେଶର ସମଗ୍ର ସାମାଜିକ ଓ ଶାସନିକ ବ୍ୟବସ୍ଥାକୁ ବିକଳ-ବିଧ୍ୱସ୍ତ କରି ପକାଇବେ, ଯାହାର ସୂଚନା ଭାରତବର୍ଷରେ ଇତି ମଧ୍ୟରେ ସ୍ପଷ୍ଟ ଦେଖା ଦେଇ ସାରିଛି ।

କୁହା ଯାଉଛି ଯେ, ଏ ଦେଶରେ ବିଦ୍ୟାର ମାନଦଣ୍ଡ କମିବାର ଏକ ମୁଖ୍ୟ କାରଣ ହେଉଛି, ଏ ଦେଶରେ ଏ ପର୍ଯ୍ୟନ୍ତ ରହିଥିବା ଇଂରାଜିଭାଷାର ପ୍ରାଧାନ୍ୟ ।

କିନ୍ତୁ ଏହା ଏକ ଘୋର ମିଥ୍ୟା ପ୍ରଚାର । ଏହା ଶ୍ୟାମ ଅପରାଧ କରିଥିଲା ବେଳେ, ରାମକୁ ସେ ଅପରାଧ ପାଇଁ ଦଣ୍ଡ ଦେବା ନ୍ୟାୟ ଛଡ଼ା ଆଉ କିଛି ନୁହେଁ ।

ଇଂରେଜ ଏ ଦେଶରେ ଥିଲା ଯାଏଁ ଆମେ ଆମର ସବୁ କିଛି ଅଭାବ ପାଇଁ ଇଂରେଜ-ଶାସନ ଉପରେ ଦୋଷ ଦେଉଥିଲେ । ବେଶ୍ ସୁବିଧା ଉପାୟ ଥିଲା । କିନ୍ତୁ ଇଂରେଜ ଗଲା ପରେ ଆମର ଜାତୀୟ ଜୀବନର କେଉଁ ବିଭାଗରେ ହେଲେ ଉନ୍ନତ ହୋଇଛି, ପାଠକେ ନିଜେ ନିଜେ ବିଚାର କରନ୍ତୁ ।

ସେହିପରି ମଧ୍ୟ ବର୍ତ୍ତମାନ ଠିଆ ହୋଇଛି ଇଂରାଜି ଭାଷା, ବହୁତ ମିଥ୍ୟା-ପ୍ରଚାରର ଶରବ୍ୟ ହୋଇ ।

## ଇଂରେଜି ଓ ମାତୃଭାଷା ମାଧ୍ୟମ

ନିକଟରେ କୌଣସି ଗଡ଼ଜାତ ହାଇସ୍କୁଲର ଭିତ୍ତିସ୍ଥାପନ ଉପଲକ୍ଷ୍ୟରେ ସମାଜ-ସମ୍ପାଦକ ଶ୍ରୀ ରାଧାନାଥ ରଥ, ତାଙ୍କର ଛାତ୍ରଜୀବନର କେତେକ ଅଭିଜ୍ଞତା କହିଲେ, ଯାହା ଏ କ୍ଷେତ୍ରରେ ଗଭୀର ଅନୁଧ୍ୟାନ ଦାବୀ କ'ରେ !

ସେ କହିଲେ ଯେ ସେ ରେଭେନ୍‌ସା କଲେଜିଏଟ୍‌ର ଛାତ୍ର ଥିଲେ । ତାଙ୍କର ଉପର ଶ୍ରେଣୀରେ ପଢ଼ୁଥିଲେ ନେତାଜୀ ବୋଷ । ସେ ବର୍ଷ ସେ କାଳର ସୁକଠିନ ଏଣ୍ଟ୍ରାନ୍‌ସ ପରୀକ୍ଷାରେ ମଧ୍ୟ, କଲେଜିଏଟ୍ ସ୍କୁଲରୁ ପ୍ରଥମ ଶ୍ରେଣୀରେ ପାସ୍ କରିଥିଲେ ଶତକଡ଼ା ୮୦, ବାକୀ ଛାତ୍ର ଅଧିକାଂଶ ଦ୍ୱିତୀୟ ଶ୍ରେଣୀର; ତୃତୀୟ ଶ୍ରେଣୀରେ ଥିଲେ ମାତ୍ର ଜଣେ ଦୁଇଜଣ । ନେତାଜୀଙ୍କ ପରବର୍ଷ ରାଧାନାଥ ବାବୁଙ୍କ ଦଳ ପରୀକ୍ଷା ଦେଲେ । ସେ ବର୍ଷ ମଧ୍ୟ ପରୀକ୍ଷା ଫଳ ପୂର୍ବବର୍ଷ ପରି ମହିମାମୟ ହୋଇଥିଲା ।

ମନେ ରଖିବାକୁ ହେବ ଯେ ଶ୍ରୀ ରଥ ଯେଉଁ ସମୟର କଥା କହୁଛନ୍ତି ସେ କାଳରେ ହାଇସ୍କୁଲରେ ମଧ୍ୟ ସବୁ ବିଦ୍ୟା ଇଂରାଜି ମାଧ୍ୟମରେହିଁ ବିତରିତ ଓ ଗୃହୀତ ହେଉଥିଲା କେବଳ ନୁହେଁ, ଇଂରାଜିରେ ଉତ୍ତମ ମାର୍କ ରଖିବା ଗୌରବାବହ ଥିଲା । ଶିକ୍ଷା ଓ ପରୀକ୍ଷାର ମାଧ୍ୟମ ଏଇପରି ଏକ ବୈଦେଶିକ ଭାଷା ଥିଲେହେଁ ସେତେବେଳେ ପରୀକ୍ଷା ଫଳ ବରାବର ସନ୍ତୋଷଜନକ ହେଉଥିଲା । ଅଥଚ, ଏବେ ତ ଶିକ୍ଷା ଓ ପରୀକ୍ଷାର ମାଧ୍ୟମ ମାତୃଭାଷା । କିନ୍ତୁ ଶ୍ରୀ ରଥହିଁ ବିଶେଷ ବିଶେଷ ହାଇସ୍କୁଲର ଉଦାହରଣ ଦେଇ ଦେଖାଇ ଦେଇଛନ୍ତି ଯେ, ଏବେ ପରୀକ୍ଷାଫଳ ହୋଇ ଉଠୁଛି ଲଜ୍ଜାଜନକ ଭାବରେ ଓଲଟା ।

ଆମ ସମୟ ପର୍ଯ୍ୟନ୍ତ ମଧ୍ୟ ହାଇସ୍କୁଲ୍ ଇଂରାଜିମୟ ଥିଲା । ସେତେବେଳେ ଅବଶ୍ୟ ଗୁଜିଆଡ଼େ ଚିତ୍କାର ହେଉଥାଏ ଯେ ଇଂରାଜି ମାଧ୍ୟମ ଉଠାଇ ଦେଇ ମାତୃଭାଷାକୁ ଚଳାଇଲେ, ମାଟ୍ରିକ୍ୟୁଲେଶନର ଷ୍ଟାଣ୍ଡାର୍ଡ଼, ଆଇ. ଏ.ର୍ ଷ୍ଟାଣ୍ଡାର୍ଡ଼କୁ ଉଠିଯିବ । ମାତୃଭାଷା ତ ଗତ କୋଡ଼ିଏ ବର୍ଷ ଧରି ହାଇସ୍କୁଲମାନଙ୍କରେ ମାଧ୍ୟମ୍ୟ ହୋଇ ସାରିଲଣି । ବର୍ତ୍ତମାନ ଦେଶର ଶିକ୍ଷକ ଓ ଶିକ୍ଷାବିତ୍ ସ୍ପଷ୍ଟ ଭାଷାରେ ଜାତି ଆଗରେ ଘୋଷଣା କରନ୍ତୁ, ଶ୍ରୀ ରଥ ଯେପରି ବର୍ଣ୍ଣନା କରିଛନ୍ତି ( ଯାହା ଏକାନ୍ତ ସତ୍ୟ ) ଆମ ହାଇସ୍କୁଲ ଶିକ୍ଷାର ମାନଦଣ୍ଡ ଯେ ପ୍ରକାର ଚରମ ଦୁର୍ଦ୍ଦଶାକୁ ଆସିଲା କିପରି, ଏବଂ ମାତୃଭାଷାକୁ ପ୍ରବର୍ତ୍ତିତ କରି ଆମର ହାଇସ୍କୁଲ ମାନଙ୍କର ଯଦି ଏ ପ୍ରକାର ଅଭୂତପୂର୍ବ ଅବନତି ଘଟିବାର ଆମେ ଦେଖୁଛୁ, ତେବେ କଲେଜ-ସ୍ତରରେ ଏ ବ୍ୟବସ୍ଥା ପ୍ରବର୍ତ୍ତିତ କରେଇବା ପାଇଁ ଆମେ ବାଧା ଉଠେଇ, କେଉଁ ଯୌକ୍ତିକତା ବଳରେ ଆଜି ଦାବୀ କରୁଛୁ ?

## ଇଂରେଜି ଆମର କୌଟୁମ୍ବିକ

ପାଠକେ ସ୍ମରଣ ରଖିବେ ଯେ, ଭାରତୀୟ ଭାଷା-ଗୋଷ୍ଠୀ ପ୍ରତି ତସ୍ଥାନ ଓ ଆରବୀ ଏବଂ ତଦ୍‌ମୂଳକ ଉର୍ଦ୍ଦୁ, ଯେ ପରିମାଣରେ "ବିଦେଶୀ" ଇଂରାଜି ଆଦୌ ସେପରି ନୁହେଁ । ଇଂରାଜି ହେଲା ଇଣ୍ଡୋ-ଏରିୟାନ୍ ବା ଇଣ୍ଡୋ-ଜର୍ମାନିକ ( ଭାରତ-ଆର୍ଯ୍ୟ ବା ଭାରତ-ଜର୍ମାନ ) ଭାଷା-ଗୋଷ୍ଠୀର

ଅନ୍ତର୍ଗତ । ଅର୍ଥାତ୍, ଅନ୍ୟ କଥାରେ ଇଂରେଜ ଏବଂ ଓଡ଼ିଆ ବା ବଙ୍ଗଳା ସତରେ ମାଉସୀ-ପିଇସୀ-ଝିଅ ଭଉଣୀ ସବୁ । କିନ୍ତୁ ଯେଉଁ ଦେଶ ସମ୍ପୂର୍ଣ୍ଣ ଭାବରେ ବିଦେଶୀ ଆରବୀ, ପାର୍ସି-ତୁର୍କୀସ୍ତାନୀ ପ୍ରଭୃତି ଭାଷାମାନଙ୍କୁ ବା ସେ ସବୁର ସନ୍ତାନ ସନ୍ତତିମାନଙ୍କୁ ଅବାଧରେ ଗ୍ରହଣ କରି ନେଇଛି ଓ ନେଉଛି, ସେ ଦେଶ ନିଜର କୌଟୁମ୍ବିକ ଭାଷା 'ଇଂରାଜକୁ ହଟାଅ ହଟାଅ' ଚିତ୍କାର କରିବା ଘୋର ଅଜ୍ଞତା ଓ ଦୂରଦୃଷ୍ଟିହୀନତା ଛଡ଼ା ଆଉ କ'ଣ କୁହାଯାଇ ପାରେ ? ଇଂରେଜ ଚାଲିଗଲେ, ହିନ୍ଦି ତାର ସାମ୍ରାଜ୍ୟ ବିସ୍ତାର କରିବ, ଏହି ବିରାଟ କୂଟଚକ୍ର ଓ ଦୁରଭିସନ୍ଧି ଛଡ଼ା ଏ ଚିତ୍କାର ପଛରେ ସାମାନ୍ୟତମ ବୌଦ୍ଧିକ ବା ଶୈକ୍ଷିକ ଯୁକ୍ତି ଅଛି ବୋଲି କୁହାଯାଇ ନ ପାରେ । ଯେଉଁମାନେ ଏ ଜାତି ଓ ଦେଶର ପ୍ରକୃତ କଲ୍ୟାଣ ଚାହାନ୍ତି, ଯେଉଁମାନେ ଏ ଦେଶରେ ବିଦ୍ୟାର ପ୍ରକୃତ ଗୌରବ ସୁପ୍ରତିଷ୍ଠିତ ରହିବାକୁ ଚାହାନ୍ତି, ସେମାନେ ଦୟାକରି ଏ ବିଷୟରେ ଗଭୀର ଚିନ୍ତା କରି ଦେଖିବେ ଏବଂ "ଇଂରେଜ ହଟାଅ"ର ଦୁରଭିସନ୍ଧିମୂଳକ ଆନ୍ଦୋଳନର ମୂଲ୍ୟ ବେଳହୁଁ ବୁଝିବେ ବୋଲି ଆଶା ।

## ଇଂରେଜି ଆମକୁ କ'ଣ ଦେଇ ପାରିଛି

ପାଠକେ ସ୍ମରଣ ରଖିବେ ଯେ, ଆଜି ଯଦି ଭାରତୀୟ ସଂସ୍କୃତି ସମଗ୍ର ବିଶ୍ୱମୟ ହୋଇ ପାରିଛି, ତାହା ହିନ୍ଦି ବା ଉର୍ଦ୍ଦୁ ବା ଆରବୀ ବା ପାର୍ସି ଯୋଗୁଁ ନୁହେଁ । ତାହା ଘଟିଛି କେବଳ ଇଂରାଜୀ ଯୋଗୁଁ, ଯାହାକୁ ଆମେ ଘୋର ଅକୃତଜ୍ଞତାରେ ଆଜି ଗୋଇଠା ମାରି ଠେଲୁଛେ । ଅଶୀ ବର୍ଷ ତଳେ ସିକାଗୋ ପାର୍ଲମେଣ୍ଟ ଅଫ୍ ରିଲିଜନସ୍‌ରେ ବୀର ସନ୍ନ୍ୟାସୀ ବିବେକାନନ୍ଦ କେଉଁ ମାଧ୍ୟମରେ ହିନ୍ଦୁ ଧର୍ମର ଜୟ ପତାକା ଉଡ଼ାଇ ପାରିଲେ ? କେବଳ ସାରା ପୃଥିବୀରେ ନୁହେଁ, ଆମ ଏଇ ଭାରତବର୍ଷର ଭିନ୍ନ ଭିନ୍ନ ପ୍ରାନ୍ତରେ ମଧ୍ୟ କେଉଁ ଭାଷା ଦେଇ ରବୀନ୍ଦ୍ରନାଥ ଓ ରାଧାକ୍ରିଷ୍ଣନ୍‌ଙ୍କ ମୂଲ୍ୟବାନ ରଚନାବଳୀ ପରିବ୍ୟାପ୍ତ ହୋଇ ପାରିଛି ? ସମଗ୍ର ଭାରତୀୟ ଭାଷା ମାନଙ୍କର ତଥାକଥିତ 'ରେନେସାଁ' ବା 'ନବଜନ୍ମ' କେଉଁ ଭାଷା ଯୋଗୁଁ ସମ୍ଭବ ହୋଇଛି ? ଏତିକି ମନେରଖି ପାଠକେ ଯେ, ଇଂରେଜୀ ଭାଷା ଓ ସାହିତ୍ୟ ଏ ଦେଶକୁ ନ ଆସିଥିଲେ ଆମେ ରାଧାନାଥଙ୍କ 'ଚିଲିକା' ବା ଫକୀରମୋହନଙ୍କ 'ମାମୁଁ' ବା

ରାମଶଙ୍କରଙ୍କ 'ବିବାସିନୀ' ତ ପାଇ ପାରି ନ ଥାନ୍ତେ ବରଂ ଏ ପର୍ଯ୍ୟନ୍ତ ଆମ ଭାଷା ସେହି କମଲଲୋଚନ-ଚଉଷଣା ସ୍ତରରେହିଁ ପଡ଼ି ରହିଥାନ୍ତା । ଏହି ଭାଷା ଓ ସାହିତ୍ୟ ଏ ଦେଶ ଓ ଜାତିକୁ ଜାତୀୟତା ଶିଖାଇଛି, ଏ ବିରାଟ ଦେଶକୁ ଐକ୍ୟ-ବୋଧ ଦେଇ ପାରିଛି ଏବଂ ଏ ଜାତିର ଚିନ୍ତା-ରାଜ୍ୟରେ ବାସ୍ତବ ବିପ୍ଳବ ଆଣି ପାରିଛି । ତେଣୁ, ଇଂରାଜୀ-ମାଧ୍ୟମ ଯୋଗୁଁ ବା ଇଂରାଜୀଭାଷାଧ୍ୟୟନ ଯୋଗୁଁ ଏ ଦେଶରେ ଶିକ୍ଷାର ମାନଦଣ୍ଡ କମୁଛି କହିବା କେବଳ ଆତ୍ମଘାତି ଅପପ୍ରଚାରର ଛଡ଼ା ଆଉ କିଛି ହୋଇ ପାରେ ନା ।

କୋଠାରି କମିଶନ୍ ଯଥା ଉପରେ ବହୁ ଆଲୋଚନା କଲେ ମଧ୍ୟ, ଆଶଙ୍କା ହେଉଛି ଯେ, କମିସନ୍ ଏ ବିଷୟକୁ ପୂରା ପୂରି ନିରପେକ୍ଷ ଶୈକ୍ଷିକ ଦୃଷ୍ଟିକୋଣରୁ ବିଚାର କରିଛନ୍ତି ବୋଲି କହି ହେଉନି । କମିସନ୍ ହିନ୍ଦୀକୁ ଇଂରାଜୀରେ ବିକଳ୍ପ ଭାବରେ ଠିଆ କରେଇ ବିଷୟର ଗୋଳମାଳିଆ ଭାଙ୍ଗି ନାହାନ୍ତି, କି, ଶିକ୍ଷାର ବୈଜ୍ଞାନିକ ଭିତ୍ତି ଉପରେ କୌଣସି ସ୍ପଷ୍ଟ ପ୍ରତିମା ଠିଆ କରି ପାରି ନାହାନ୍ତି । କମିସନ୍, ପୁଣି ଆମ ପିଲେ ମାତୃଭାଷା ଓ ହିନ୍ଦୀ ଓ ଇଂରାଜୀ ଶିଖିବାକୁ କେବଳ କହି ନାହାନ୍ତି, ସେମାନେ 'ରଷାନ୍' ଓ 'ଜର୍ମାନ୍' ଇତ୍ୟାଦି ଆଉ ଏକ ଏକ "ଲାଇବ୍ରେରି-ଲାଙ୍ଗୁଏଜ୍" ବା 'ପୁସ୍ତକାଳୟ-ଭାଷା' ଶିଖିବାକୁ ମଧ୍ୟ ସୁପାରିଶ୍ କରିଛନ୍ତି । ଏ ଉତ୍ତମ ପ୍ରସ୍ତାବ । ଭାଷାକୁ ଉତ୍ତମ ରୂପେ ଆୟତ୍ତ କରିବା ଓ ତାହାକୁ ବିଶୁଦ୍ଧ ଭାବରେ କହିବା-ଲେଖିବା ହେଉଛି, 'ଶିକ୍ଷିତ' ଲୋକର ପ୍ରଧାନ ଚିହ୍ନ । ପୁଣି ବହୁ ଭାଷାବିଜ୍ଞତା ନିଶ୍ଚିତ ଭାବରେ 'ପାଣ୍ଡିତ୍ୟ'ର ବା ଅସାଧାରଣ ମାନସିକ ଶକ୍ତିର ପରିଚାୟକ । ୟୁରୋପରେ ସାଧାରଣ ଗ୍ରାଜୁଏଟ୍ ୩।୪ଟା ଭାଷା ଜାଣିବା ସାଧାରଣ କଥା ।

## ଭାଷା-ଶିକ୍ଷାର ପ୍ରେରଣା

କିନ୍ତୁ, କୋଠାରି-କମିସନ୍ ଭାଷା-ଶିକ୍ଷା ପାଇଁ "ମୋଟିଭେଶନ୍" ବା ପ୍ରେରଣା ଉପରେ ଖୁବ୍ ଜୋର ଦେଇ ଆଲୋଚନା କରିଛନ୍ତି । ଏହା ଏକ ସ୍ୱାଭାବିକ ଓ ଯୁକ୍ତିଯୁକ୍ତ ବିଚାର । ତେଣୁ ଗୋଟିଏ ସାଧାରଣ ଓଡ଼ିଆ ପିଲାକୁ ଧରି ନେଇ, ଆମେ ବିଚାର କରିବା ଉଚିତ, ତା'ର, ମାତୃଭାଷା ବା (ଓ) ଆଞ୍ଚଳିକ ଭାଷା ଛଡ଼ା, ଆଉ କି କି ଭାଷା ତାର ଜାଣିବା ଉଚିତ ।

## ଓଡ଼ିଆହିଁ ଯଥେଷ୍ଟ

ଆମେ ଧରି ନେବା ଯେ, ଓଡ଼ିଶା ପ୍ରଦେଶର ଶତକଡ଼ା ୮୦ ଲୋକ ତାଙ୍କର ସମଗ୍ର ଜୀବନ କାଳ ଭିତରେ ଓଡ଼ିଶା ବାହାରକୁ ଗଲେ, ନିଜ ଗାଁ ଗଣ୍ଡି ବାହାରକୁ ମଧ୍ୟ ଯିବାର ଦରକାର କରନ୍ତି ନାହିଁ। ଆବହମାନ କାଳରୁ ଓଡ଼ିଶାକୁ ଜଗତର ଭାରତର ସର୍ବାଞ୍ଚଳରୁ ତୀର୍ଥଯାତ୍ରୀ ଆସନ୍ତି, ଓଡ଼ିଆ-ଭାଷାରେ ସମ୍ପୂର୍ଣ୍ଣ ଅଜ୍ଞ ରହି, ସାମାନ୍ୟ କେତେକ ଓଡ଼ିଆ, (ବିଶେଷ କରି ବୁଢ଼ାବୁଢ଼ୀ) ସେହିପରି ଭାରତର ଅନ୍ୟାଞ୍ଚଳମାନଙ୍କୁ ତୀର୍ଥ କରି ଯାଇଥାନ୍ତି, କୌଣସି ହେଲେ ଅନ୍ୟ ଭାରତୀୟ ଭାଷା ନ ଜାଣି ଏବଂ କୌଣସି ଅସୁବିଧା ଭୋଗ ନ କରି, ଫେରି ଘରକୁ ଫେରିଥାନ୍ତି। ଅନ୍ୟ କଥାରେ, ସାଧାରଣ ଓଡ଼ିଆ ପିଲା ପାଇଁ ତାର ନିଜ ଭାଷା ଓଡ଼ିଆହିଁ ଯଥେଷ୍ଟ। ଏବେ ଆମେ ଓଡ଼ିଶାର ଯେ କୌଣସି ଗୋଟିଏ ସାଧାରଣ ଗାଁକୁ ଧରି ନେଲେ, ଦେଖିବା ଯେ, ସେ ଗାଁରେ ଏହି ଗଲା ଦଶବର୍ଷ ଭିତରେ କାଁ ଭାଁ ଜଣେ ଦିଜଣ ଇଂରାଜୀ ଜାଣିଥିବା ଥିବେ, କିନ୍ତୁ ସାରା ଗାଁଟା ହୁଏତ ଓଡ଼ିଆ ଛଡ଼ା ଆଉ କିଛି ଜାଣନ୍ତି ନାହିଁ ଏବଂ ଏପରିକି ଓଡ଼ିଆ ପଢ଼ି ମଧ୍ୟ ଜାଣନ୍ତି ନାହିଁ; କେବଳ କହି ପାରନ୍ତି ଓ ବୁଝି ପାରନ୍ତି। ଏମାନେ କିନ୍ତୁ ଆଦୌ ନୁହେଁ ପାଠକେ, ଯେ ସମ୍ପୂର୍ଣ୍ଣ ନିରକ୍ଷରତା ବା ଓଡ଼ିଆ-ଛଡ଼ା-ଅନ୍ୟ-ଭାଷା-ନ-ଜାଣିଥିବା ଯୋଗୁଁ ସେମାନେ ତଥାକଥିତ ମୂର୍ଖ ବା ପାଷଣ୍ଡ ! ବରଂ ଆମେ ଅଧିକାଂଶ ତଥାକଥିତ ଆଜିର ଶିକ୍ଷିତ, ସେହି ନିରକ୍ଷର ଗ୍ରାମବାସୀଙ୍କ ଅପେକ୍ଷା ବହୁ ଗୁଣରେ ମୂର୍ଖ ଓ ବହୁ ଗୁଣରେ ପାଷଣ୍ଡ। ଆଜି ଯଦି ସେମାନଙ୍କ ଜୀବନରେ ମଧ୍ୟ ନୈତିକ ବିପର୍ଯ୍ୟୟ ଆସିଥାଏ, ତେବେ ତାହା ପାଇଁ ଆମେ ତଥାକଥିତ ଶିକ୍ଷିତ ଲୋକହିଁ ବହୁ ପରିମାଣରେ ଦାୟୀ। ନିରପେକ୍ଷ ଭାବରେ ବିଚାର କରି ବସିଲେ, ଯଥାର୍ଥ ଭାବରେ 'ଶିକ୍ଷିତ' ବା 'ସଂସ୍କୃତିବାନ୍' ହେବା ପାଇଁ କୌଣସି ଗୋଟିଏ ହେଲେ ଭାଷାର ଜ୍ଞାନ ଦରକାର ନାହିଁ ବା ନିଜ ମାତୃଭାଷା ଛଡ଼ା ଅନ୍ୟ କୌଣସି ଭାଷା ଦରକାର ନାହିଁ। ଆମେ ଭୁଲି ଯାଉ ଯେ, ଶିବାଜୀ, ଆକବର, ରାମକୃଷ୍ଣ ପରମହଂସ ପ୍ରଭୃତି ଅନେକ ମହାମାନବ, ସମ୍ପୂର୍ଣ୍ଣ ନିରକ୍ଷର ଥିଲେ ଏବଂ ଅସାଧାରଣ ପ୍ରତିଭାଶାଳୀ ସାମନ୍ତ ଚନ୍ଦ୍ରଶେଖର, ଓଡ଼ିଆ ଅକ୍ଷର ଛଡ଼ା ଅନ୍ୟ କୌଣସି ଅକ୍ଷର ଜାଣି ନ ଥିଲେ।

ତେଣୁ 'ଶିକ୍ଷାପ୍ରଣାଳୀ,' 'ଶିକ୍ଷାପ୍ରସାର' ଇତ୍ୟାଦି କରି ଆମେ ଯେ ପ୍ରତିବର୍ଷ ବହୁ କୋଟି ଟଙ୍କା ଖର୍ଚ୍ଚ କରୁଛେ, ତାହା କି ଶିକ୍ଷା, ବା ଅଶିକ୍ଷା, ବା କୁଶିକ୍ଷା, ତାହାଦ୍ୱାରା ପ୍ରକୃତରେ ନାଗରିକର ବ୍ୟକ୍ତିଗତ ମଙ୍ଗଳ, ତା ଜନ୍ମମାଟିର ବା ଜନ୍ମ-ଗୋଷ୍ଠୀର ମଙ୍ଗଳ ବା ଦେଶର ସାମୂହିକ ମଙ୍ଗଳ, କେଉଁ ମଙ୍ଗଳ ଆମେ ପାଉଛୁ, ତାହା ଗଭୀର ନିରପେକ୍ଷତାର ସହିତ ବିଚାର କରିବାର କଥା ଏବଂ ସେହି ଅନୁସାରେ ଆମର ପ୍ରାଥମିକ, ମାଧ୍ୟମିକ ଓ ଅନ୍ତିକ ଶିକ୍ଷାର ଓ ସେ ସବୁଥିରେ ଭାଷା-ଶିକ୍ଷାର କି ବ୍ୟବସ୍ଥା ଓ କାହିଁକି କରାଯିବ, ତାର ବିଚାର ମଧ୍ୟ କରିବା ଉଚିତ।

ଏହି ଦୃଷ୍ଟିକୋଣରୁ ବିଚାର କରି ବସିଲେ, ସମଗ୍ର ପ୍ରାଇମେରୀ ଶିକ୍ଷା, ଯାହାହିଁ ଅଧିକାଂଶ ପିଲାଙ୍କ ପାଇଁ ସାଧାରଣ ଶିକ୍ଷା ହେବ ଏବଂ ଯାହା ପଢ଼ି ଅଧିକାଂଶ ପିଲା ନିଜ ନିଜ ଗାଁଗହଳରେ କୌଳିକ ବ୍ୟବସାୟକୁ ଫେରିଯିବାର ଆଶା ହେବା ମଧ୍ୟ ଉଚିତ, ସେ ସ୍ତରରେ ଆଞ୍ଚଳିକ ଭାଷା ଛଡ଼ା ଅନ୍ୟ କୌଣସି ଭାଷାର ଆବଶ୍ୟକତା ନାହିଁ। ଏ ଦୃଷ୍ଟିରୁ ଆମେ ଯେପରି ଭାବରେ ଚତୁର୍ଥ ଶ୍ରେଣୀରୁ, ଆମେ ପିଲେ ଓଡ଼ିଆ ଭଲକରି ନ ଜାଣିବା ପୂର୍ବରୁ, ଇଂରାଜୀ ଆଣି ପୂରେଇଦେଉଛେ, ତାହା ଏକାନ୍ତ ଉଦ୍ଭଟ, ଚିନ୍ତାହୀନ, ଅପକାରକ ଏବଂ ସର୍ବଥା ଓ ତୁରନ୍ତ ପରିତ୍ୟାଜ୍ୟ।

## ଆମର ଜାତିର ଐକ୍ୟ ଓ ହିନ୍ଦି

କିନ୍ତୁ କଥା ହେଉଛି ଯେ, ଆଜି ସମୟ ଓ ଅବସ୍ଥା ବଦଳିଛି। ଆମର ଗତ ପାଞ୍ଚ ହଜାର ବର୍ଷର ସଭ୍ୟତାରେ ଯାହା ଦେଖା ନ ଥିଲା, ଆମର ସାମଗ୍ରିକ ଓ ବ୍ୟକ୍ତିଗତ ଜୀବନରେ ତାହା ସବୁଠୁ, ଏପରିକି ଧର୍ମ-ଠାରୁ ମଧ୍ୟ, ଆଜି ବଡ଼ହୋଇ ଠିଆ ହୋଇଛି। ତାହା ହେଉଛି ଜାତୀୟତା ବା ନାଶନାଲିଜିମ୍। ପୂର୍ବେ ଏହା ଆମର ସାଧାରଣ ଭାବନାରେ ନ ଥିଲା। ଆଧୁନିକ ଆମର ଜୀବନକୁ ବ୍ରିଟିଶ ରାଜତ୍ୱର ଏହାହିଁ ପ୍ରଧାନତମ ଦାନ। ଏହାର ଯୋଗୁହିଁ ଆମେ ଆଜି ଏକ 'ସ୍ୱାଧୀନ' ଜାତି ବୋଲାଉଛେ।

କିନ୍ତୁ ଏହି 'ଜାତି' ବା 'ନେଶନ' କିଏ ? ଓଡ଼ିଆ ବା ବଙ୍ଗାଳି ବା ବିହାରୀ ଏହି 'ଜାତି' ନୁହନ୍ତି। ଜାତି, କେବଳ ଭାରତୀୟ ମହାଜାତି।

ଓଡ଼ିଆ, ବିହାରୀ, ଆସାମୀ ତାର ଶାଖା ପ୍ରଶାଖା ମାତ୍ର । ଭାରତୀୟ ଜୀବନର ବିରାଟ କାଣ୍ଡ ଓ ସକଳ ଶାଖା ପ୍ରଶାଖାକୁ ଏକାତ୍ମ କରି ଆଣି ଦେଇ ପାରିଥିଲା, ଇଂରେଜି ଭାଷା । ଇଂରେଜୀ ଭାଷା ଆମର ଅନ୍ୟ ଅନେକ ପ୍ରକାରରେ ମଧ୍ୟ ଅଶେଷ କଲ୍ୟାଣ ସାଧିତ କରି ଯାଇଛି । ତାହା ପୂର୍ବେ ସୂଚିତ ହୋଇଛି । କିନ୍ତୁ ଯେଉଁ ଜାତୀୟତା ବା ନାଶନାଲିଜମ୍ ଇଂରେଜୀ ଭାଷା ଆମକୁ ଦେଇଗଲା, ସେହି ଜାତୀୟତାହିଁ ଆଜି ଆମକୁ ଉଦ୍‌ବୁଦ୍ଧ କରାଉଛି ଯେ, ଜାତୀୟତାର ଅନୁରୋଧରେହିଁ, "ଇଂରେଜୀକୁ ଛାଡ଼ ।"

ଆମର ଭାରତ, ଆବହମାନ କାଳରୁ ଏକ ବହୁଭାଷୀ ରାଷ୍ଟ୍ର ରହି ଆସିଛି । ପ୍ରତ୍ୟେକ ଅଞ୍ଚଳ ନିଜର ଆଞ୍ଚଳିକ ଭାଷା ନେଇ ନିଜ କାମ ଚଳାଉଥିଲା, କିନ୍ତୁ ଉପରସ୍ତରରେ ବରାବର ଏକ ଯୋଗାଯୋଗ ଭାଷା ଥିଲା । ବହୁଶତାବ୍ଦି ଧରି ସଂସ୍କୃତ ଥିଲା ଏହି ଯୋଗକାରୀ ଭାଷା, ତାପରେ ହେଲା ବୌଦ୍ଧଧର୍ମ ଦେଇ 'ପାଲି' । ତା'ପରେ ମୁସଲମାନ୍-ଅମଳରେ ଚଳିଲା ଫାର୍ସୀ, ତା'ପରେ ଇଂରେଜୀ ଅମଳରେ ହେଲା ଇଂରେଜି । ପାର୍ସୀ-ଆରବୀ ପ୍ରଭୃତି ଭାରତର ଆତ୍ମାକୁ ସ୍ପର୍ଶ କରି ପାରି ନାହାନ୍ତି । ଉତ୍ତର ପ୍ରଦେଶ ଓ ବିହାରରେ ଏ ସବୁର ପ୍ରଭାବ ହିନ୍ଦୁ-ସମାଜରେ ସାମାନ୍ୟ ଦେଖାଗଲେ ମଧ୍ୟ, ସମଗ୍ର ଭାରତୀୟ ଜନତା ଏ ସବୁ ପ୍ରତି ନିସ୍ପୃହ । ଏ ପର୍ଯ୍ୟନ୍ତ, ଇଂରେଜି ସାଥିକି, ସଂସ୍କୃତ ମଧ୍ୟ ଭାରତର ପଣ୍ଡିତ ସମାଜର ସାଧାରଣ ଭାଷା ହୋଇ ରହିଛି ।

ବର୍ତ୍ତମାନ ସମସ୍ୟା ଏହି ଯେ, ଯଦି ଆମେ ଇଂରେଜି କୁ ଛାଡ଼ିବା, ତେବେ ଯୋଗକାରୀ ଭାଷା କିଏ ହେବ ? ହୁଏତ ହେବ ସଂସ୍କୃତ, ନଚେତ୍ ହିନ୍ଦି—ହିନ୍ଦୁସ୍ତାନୀ । କିନ୍ତୁ ଭାରତୀୟ ଜନମତ, ଏପର୍ଯ୍ୟନ୍ତ କୌଣସିଟି ଭାଷା ଉପରେ ଏକମତ ହୋଇପାରୁ ନାହିଁ । କୁହା ଯାଉଛି ଯେ, ସଂସ୍କୃତ ଏକ ମୃତଭାଷା ଓ କଠିନ ଭାଷା, ପୁଣି ହିନ୍ଦି-ହିନ୍ଦୁସ୍ତାନୀର ନିଜସ୍ୱ ମହତ୍ତ୍ୱ କିଛି ନାହିଁ, ଯେପରି ଅଛି ପ୍ରାଚୀନ ତାମିଲ ବା ଆଧୁନିକ ବଙ୍ଗଳାର, ଇଂରେଜୀ ବା ସଂସ୍କୃତର ବଦଳି ହେବାପାଇଁ ଏ ଭାଷାର କୌଣସି ହେଲେ ଯୋଗ୍ୟତା ନାହିଁ । ଅଧିକନ୍ତୁ ଏ ଭାଷାକୁ ଗ୍ରହଣ କରି ନେବା ମାନେ ହିନ୍ଦିଭାଷୀ ଲୋକଙ୍କର ଅଣ-ହିନ୍ଦିଭାଷୀମାନଙ୍କ ଉପରେ ଆଧିପତ୍ୟ ସ୍ୱୀକାର

କରି ନେବା । ସେଥିପାଇଁ ଅନେକଙ୍କ ମତ ଯେ, ଏତେ ଗୋଳମାଳକୁ ବାହିଁକି ଯାଉଛ, ଇଂରାଜ ଯେପରି ଥିଲା ସେପରି ଥାଉ ।

ଆମେ ଆମ ଓଡ଼ିଶାର ଆବଶ୍ୟକତାକୁ ଅନାଇ ଏ ବିଷୟଟି ବିଚାର କଲେ, ହୁଏ ତ ଆମପକ୍ଷ ଏହା ସ୍ପଷ୍ଟତର ହେବ । ତେଣୁ ତାହାହିଁ କରିବା ।

ଉପରେ କୁହା ଯାଇଛି ଯେ, ପ୍ରାଇମେରି ସ୍ତରରେ ଆଞ୍ଚଳିକ ଭାଷା (ଓଡ଼ିଆ) ଛଡ଼ା ଆଉ କୌଣସି ଭାଷା ପଢ଼େଇବାର ଆଦୌ ଆବଶ୍ୟକତା ନାହିଁ,—ନାହିଁ ହିନ୍ଦୀ; ନାହିଁ ଇଂରାଜୀ ।

କୋଠାରି କମିସନ ଠାଏ ଦୃଢ଼ ଭାବରେ ଏପରି କହିଛନ୍ତି—

"ଆଜି ଆମ ଆଗରେ ଶିକ୍ଷାର ମୂଳ ସମସ୍ୟା ହେଲା ଏହି ଯେ, ଆମେ ଆମ ପିଲାଙ୍କୁ ମାତୃଭାଷାଟିକୁ ଉତ୍ତମ ଓ ନିପୁଣ ଭାବରେ ଶିଖାଇ ଏ ଦେଶରୁ ମୂର୍ଖତା କିପରି ଦୂର କରିବା । ମାତୃଭାଷା ଛଡ଼ା ଅନ୍ୟ ଭାଷା ଶିଖେଇ ବସିବା ଏକ ପ୍ରଚୁର ବ୍ୟୟସାଧ୍ୟ ବ୍ୟାପାର, ଯାହାକି ଭାରତର ଶିକ୍ଷା ବ୍ୟବସ୍ଥା ସମ୍ଭାଳି ପାରିବ ନାହିଁ କି, ସେଥିପାଇଁ ଶିକ୍ଷକ ଓ ଅନ୍ୟାନ୍ୟ ଆବଶ୍ୟକତା ଯୋଗାଇ ପାରିବ ନାହିଁ । ଶିଳ୍ପ-ସମୃଦ୍ଧ ଦେଶମାନଙ୍କରେ ମଧ୍ୟ ସମଗ୍ର ପ୍ରାଇମେରି ସ୍ତରରେ କେବଳ ମାତୃଭାଷାହିଁ ଶିକ୍ଷା ଦିଆଯାଉଥିଲା ଓ ତାହାହିଁ ଥିଲା ଏକମାତ୍ର ମାଧ୍ୟମ । ଏବେ, ଖୁବ୍ ଟଙ୍କା ପଇସା ହେବାରୁ କାଁ ଭାଁ କାହିଁ କାହିଁ ପ୍ରାଇମେରି ସ୍ତରରେ ଏକ ଦ୍ୱିତୀୟ ଭାଷା ପ୍ରବର୍ତ୍ତିତ କରା ଯାଉଛି, କିନ୍ତୁ ସବୁଠି ନୁହେଁ ।" ( ପୃ ୧୯୨ )

କିନ୍ତୁ, ଅନ୍ୟତ୍ର, ବୋଧହୁଏ କେବଳ ରାଜନୈତିକ ଚାପ ଫଳରେ ହୁଏତ କହିଛନ୍ତି—

"ଲୋଅର ପ୍ରାଇମେରି ସ୍ତରରେ ପିଲାଏ ଦୁଇଟି ଭାଷା ଶିଖିବା ଉଚିତ, ମାତୃଭାଷା ବା ଆଞ୍ଚଳିକ ଭାଷା ଓ ସଂସ୍କୃତ ଭାଷା ହିନ୍ଦୀ ।" ( ପୃ ୨୩୫ )

ଭାରତର କୋଟି କୋଟି ହିନ୍ଦୀ-ଭାଷୀ ପିଲାଏ ତାଙ୍କର ପ୍ରାଇମେରି ସ୍କୁଲ ସ୍ତରରେ ଯଦି କେବଳ ଗୋଟିଏ ଭାଷା ଓ ଗୋଟିଏ ମାଧ୍ୟମ ଅର୍ଥାତ୍ କେବଳ ହିନ୍ଦୀ କୁ ଧରିହିଁ ଚାଲିବେ, ତେବେ ଆମର ମୁଷ୍ଟିମେୟ ଓଡ଼ିଆ ପିଲେ ପ୍ରାଇମେରି ସ୍ତରରେ ଦୁ'ଦୁଇଟା ଓ ତିନି ତିନିଟା ଭାଷା ଶିଖିବାକୁ କେଉଁ ବାଧ୍ୟତା ଓ କେଉଁ ନ୍ୟାୟ ଏବଂ କେଉଁ ଯୁକ୍ତିଯୁକ୍ତତା ଉପରେ

କୁହାଯାଉଛି ? ଲେଖକର କିନ୍ତୁ ଦୃଢ଼ମତ ଏହି ଯେ, ସମସ୍ତ ପ୍ରାଇମେରୀ ସ୍ତରଟି ଆମ ଓଡ଼ିଆ ପିଲାଙ୍କର ସମଗ୍ର ଆଗାମୀ ଜୀବନର ଶିକ୍ଷାର ଦୃଢ଼ ମୂଳଭିତ୍ତି ରୂପେ ମାତୃଭାଷା ଓଡ଼ିଆରେ ଗଭୀର ଭାବରେ ପଠନ-ଲିଖନ ଓ ଗଣନ ଶିଖେଇ ନେବାରେ ହିଁ ବ୍ୟାପୃତ ହେବା ଉଚିତ । ତାହା ହିଁ ହେବ ମୁଖ୍ୟ ପାଠ୍ୟ । ସମଗ୍ର ପ୍ରାଇମେରୀ ସିଲାବସ ଏହିପରି କରାଯାଉ । ତାହା ହିଁ ହେବ ସ୍ୱାଧୀନ ଭାରତର ସାଧାରଣ ନାଗରିକର ପାଇଁ ଆଦ୍ୟ ଓ ପରମ ପ୍ରସ୍ତୁତି । ନାଗରିକତାର ପ୍ରସ୍ତୁତିର ଅଂଶ ଭାବରେ ଆମେ ଯାହା ଅତ୍ୟାବଶ୍ୟକ ଭାବିବା, ସେହି କେତୋଟି କଥା ଆମେ ପ୍ରାଇମେରୀ ଶିକ୍ଷାର ଶେଷ ଆଡ଼କୁ ସାମାନ୍ୟ ସାମାନ୍ୟ ଭାବରେ ପିଲାଙ୍କ ନିକଟରେ ପହଞ୍ଚେଇ ଦେଇ ପାରିବା । ସ୍କୁଲ ଛାଡ଼ିବା ପୂର୍ବରୁ ଆମେ ଆମ ପିଲାଙ୍କୁ ଚତୁର୍ଦ୍ଦିଗର ଜଗତ, ଉପରର ଆକାଶ, ନିଜ ରାଜ୍ୟ ଓ ବାହାରର ପୃଥିବୀ, ନାଗରିକ ଭାବରେ କେତେକ ମୌଳିକ ଦାୟିତ୍ୱ,—ଏ ସବୁରେ ଆମେ ତାଙ୍କର ଆଗ୍ରହ ଜାଗ୍ରତ କରେଇ ନେବା ଏକାନ୍ତ ଉଚିତ । ସେଇ ସାଥିରେ, କେବଳ ରିବ ଭାବରେ ହୁଏତ ଇଂରାଜୀ, ହିନ୍ଦୀ, ବଙ୍ଗଳା ବା ତେଲୁଗୁର କେବଳ ଲିପି ଆମ ପିଲେ ଶିଖି ନେଇ ପାରନ୍ତି ଓ ପଢି ନେଇ ପାରନ୍ତି । ଆନ୍ତର୍ଜାତୀୟ ସଂଖ୍ୟା-ଲିଖନ ଓ ଦଶମିକଗଣନ ପ୍ରଣାଳୀ । ସେମାନଙ୍କ ଭିତରୁ ଯାହାର ଏସବୁ ଭାଷା ଆଡ଼କୁ ଜନ୍ମଗତ ଆକର୍ଷଣ ଥିବ, ତାହା ବଳେ ଫୁଟି ବାହାରିବ ।

କିନ୍ତୁ ପ୍ରାଇମେରୀ ଶିକ୍ଷା ପାଇଲା ପରେ ଶତକଡ଼ା ଅଶୀ ଜଣଙ୍କ ପଢ଼ା ସାରି ଗାଁରେ ରହିବାର ବା ସହରମାନଙ୍କରେ ଭିନ୍ନ ଭିନ୍ନ ଧନ୍ଦାରେ ଲାଗିବାର ଆଶା କରାଯାଏ । ଏମାନେ ଓଡ଼ିଶା ବାହାରକୁ ଜୀବନରେ ଥରେ ହେଲେ ଯାଇ ନ ପାରନ୍ତି । ତେଣୁ ଏମାନଙ୍କ ଉପରେ ଅନ୍ୟ କୌଣସି ଭାଷା ଜବରଦସ୍ତି ଲଦି ମାତୃଭାଷା ଶିକ୍ଷାକୁ ଖର୍ବ କରିବାର କୌଣସି ଯୁକ୍ତି ନାହିଁ ।

କିନ୍ତୁ ଦେଶରେ ଏପରି ବ୍ୟବସ୍ଥା ରଖିଥିବା ଉଚିତ, ଯେପରି କି ଯିଏ ଯେଉଁ ସ୍ତରରେ ହେଲେ, ଶୃଙ୍ଖଳ ମାନ ରେ ସହଜରେ ଅନ୍ୟ ଭାଷା ଶିକ୍ଷା କରି ପାରିବ । କୋଠାରୀ କମିସନ ଏଥିପାଇଁ ଭିନ୍ନ ଭିନ୍ନ ଶିକ୍ଷା କେନ୍ଦ୍ରରେ ବହୁଭାଷା-ଶିକ୍ଷା-ବ୍ୟବସ୍ଥା ଠିଆ କରାଇବାର ସୁପାରିଶ କରିଛନ୍ତି, ଯାହା କି ସର୍ବଥା ଗ୍ରହଣୀୟ । ବିଶେଷ କରି କମିସନ ହିନ୍ଦୀ ଶିକ୍ଷା

ସମ୍ପର୍କରେ ଯାହା ପ୍ରସ୍ତାବ ଦେଇଛନ୍ତି, ସେଥିରେ ଏ ଲେଖକ ସମ୍ପୂର୍ଣ୍ଣ ଏକମତ । ସେ କହୁଛନ୍ତି—

"ସମଗ୍ର ଦେଶରେ, ସ୍ୱେଚ୍ଛାକୃତ ଭାବରେ ହିନ୍ଦୀ ଶିଖିନେବା ପାଇଁ ସର୍ବବ୍ୟାପ୍ତ ବ୍ୟବସ୍ଥା ରହିବା ଉଚିତ । କିନ୍ତୁ କୌଣସି ଅନିଚ୍ଛୁକ ଗୋଷ୍ଠୀ ବା ବ୍ୟକ୍ତି ଉପରେ ଏ ଭାଷାକୁ ଯେପରି ଜବରଦସ୍ତ ଲଦି ଦେବାର ଚେଷ୍ଟା କରା ନ ଯାଏ ।" ( ପୃ ୬୩୭ )

ପୃଥିବୀର ସର୍ବାଞ୍ଚଳରେ, ପ୍ରାଇମେରୀ ଶିକ୍ଷାପରେ ଅର୍ଥାତ୍ ନିଜ ମାତୃଭାଷାଟିକୁ ଉତ୍ତମ ଭାବରେ ଆୟତ୍ତ କରି ସାରିଲା ପରେ ମାତୃଭାଷାର ଅଭିଜ୍ଞତା ଉପରେହିଁ ଅନ୍ୟ ଭାଷାସବୁ ଶିକ୍ଷା ଦେଇଥାନ୍ତି । ଆମର ମଧ୍ୟ ସେଇଆ ହେବା ଉଚିତ ।

## ସ୍କୁଲ ବାହାରେ ହିନ୍ଦି

ପ୍ରାଇମେରୀ ପରେ ମାଧ୍ୟମିକ ସ୍ତର । ସେଠି ମଧ୍ୟ ଆଜି ଅଧ୍ୟାପନାର ମାଧ୍ୟମ ଓଡ଼ିଆ ଏବଂ ଓଡ଼ିଆହିଁ ରହିବ । କିନ୍ତୁ ଯେହେତୁ କୋଠାରୀ କମିସନ ଘୋଷଣା କରିଛନ୍ତି ଯେ, ଆମର ମ୍ୟାଟ୍ରିକ୍ୟୁଲେସନ ପାଠ ଅନ୍ୟ ସଭ୍ୟ ଦେଶର ପ୍ରାଇମେରୀ ପାଠ ସହିତହିଁ ସମାନ ତେଣୁ ହେଉଁ 'ଜାତୀୟତା'ରେ ଉଦ୍‌ବୁଦ୍ଧ ହୋଇ ଆମେ ଇଂରାଜିକୁ ତଡ଼ିବାକୁ ବସିଛୁ, ସେହି ଉଦ୍‌ବୋଧନରେହିଁ ଆମର ମାଟ୍ରିକ୍ୟୁଲେସନ ସିଲବସ୍‌କୁ ସବୁଥା ଉପରକୁ ଉଠେଇବାକୁ ହେବ । କିନ୍ତୁ ସେ ବିଷୟର ଆଲୋଚନା ଏଠାରେ ଏବେଣି ନ କରି, ଆମେ ଭାବିବା, ମାଧ୍ୟମିକ ସ୍ତରରେ ଆଞ୍ଚଳିକ ଭାଷା (ଓଡ଼ିଆ) ଛଡ଼ା ଅନ୍ୟ କେଉଁ ଭାଷା ଆମ ପିଲାଙ୍କୁ ଆମେ ଶିଖେଇବା ଏବଂ ଯଦି ଶିଖାଇବା, ତେବେ ତାହା କେଉଁ ଭାଷା ଓ ତାହା ପଢ଼େଇବାର ହେତୁ କ'ଣ ?

ଆମେ ଉପରେ ଜାତୀୟ ଐକ୍ୟ କଥା କହିଛେ । ଏହା ପ୍ରକୃତରେ ଏକାନ୍ତ ଆବଶ୍ୟକ । ଆମେ ଯେଉଁ ଭାରତୀୟମାନେ ବିଦେଶ ଯାଇଛୁ; ଆମେ ବିଦେଶରେ ଆମ ନିଜ ନିଜ ଭିତରେ ମଧ୍ୟ ଇଂରାଜୀରେ କଥା ହେଲେ, ବିଦେଶୀଏ ବିସ୍ମିତ ହୋଇ ପଚାରନ୍ତି,—ତମେ ନିଜ ନିଜ ଭିତରେ

ଇଂରାଜରେ କଥା ହେଉଛ କାହିଁକି ? ତମର କ'ଣ ନିଜର କମନ୍ ଲାଙ୍ଗୁଏଜ୍ ନାହିଁ ?

ଏହା ନିଶ୍ଚୟ ଆମ ଜାତୀୟତା ପ୍ରତି ଏକ ଅପମାନ ଏବଂ ଆଜି ଏକାଞ୍ଚଳର ଭାରତୀୟ ଓ ଅନ୍ୟାଞ୍ଚଳ ଭାରତୀୟ ଭିତରେ ଯୋଗସୂତ୍ର ସ୍ଥାପନ ପାଇଁ ହିନ୍ଦି ପରି ଦ୍ୱିତୀୟ ଭାଷା ଯେ ନାହିଁ, ଏହା ଆମକୁ ସ୍ୱୀକାର କରିବାକୁ ହେବ । ପୁଣି ହିନ୍ଦି ଏକ ସହଜ-ଶିକ୍ଷଣୀୟ ଭାଷା । ଭାରତର ସର୍ବାଞ୍ଚଳରେ, ଯେଉଁ ଲୋକସବୁ କେବେ ସ୍କୁଲ ଦେଖି ନାହାନ୍ତି, ସେମାନେ ମଧ୍ୟ ଅଳ୍ପ ଅଭ୍ୟାସରେ ସୁନ୍ଦର ହିନ୍ଦି କହି ପାରୁଥାନ୍ତି । କଟକ ଓ ଭୁବନେଶ୍ୱରରେ ନିରକ୍ଷର ଆନ୍ଧ୍ର ରିକ୍ସାବାଲା ସବୁ ଯେପରି ସୁନ୍ଦର ହିନ୍ଦି କହୁଥାନ୍ତି, ସେଥିରୁ ହିନ୍ଦି-ଶିକ୍ଷା ପାଇଁ ବିଶାଳ, ବ୍ୟୟସାଧ୍ୟ, ସାଡ଼ମ୍ବର ବ୍ୟବସ୍ଥା ଅପରିହାର୍ଯ୍ୟ ଭାବରେ ଆବଶ୍ୟକ କହିବା, କେବଳ ଅଭିସନ୍ଧିମୂଳକ । ଜାତୀୟ ଐକ୍ୟର ବାନା ଧରି, କେନ୍ଦ୍ରରେ ହିନ୍ଦିଭାଷୀଙ୍କ ସଂଖ୍ୟା-ଗରିଷ୍ଠତାକୁ ରାଜନୈତିକ ଆୟୁଧ କରି, ସ୍କୁଲ୍-କଲେଜ ସବୁଠି ହିନ୍ଦିକୁ ଜବରଦସ୍ତି ପୂରାଇବା ଦ୍ୱାରାହିଁ, ଏହି ଭାଷା ବିରୁଦ୍ଧରେ ଅଣ-ହିନ୍ଦି ରାଜ୍ୟ ମାନଙ୍କରେ ଭୀଷଣ ପ୍ରତିକ୍ରିୟା ଉଠୁଛି ।

ପୂର୍ବରୁ, କୋଠାରି କମିସନ, ପ୍ରତି ରାଜ୍ୟରେ ଭାଷା-ଶିକ୍ଷାନୁଷ୍ଠାନ ସବୁ ସ୍ଥାପନ ପାଇଁ କପରି ସୁପାରିଶ କରିଛନ୍ତି, ତାହା କୁହା ଯାଇଛି । ଆମକୁ ଏପରି ବ୍ୟବସ୍ଥା କରିବାକୁ ହେବ ଯେପରିକି, ଯେ କୌଣସି ଲୋକ ଯେ କୌଣସି ସ୍ତରରେ କୌଣସି ବିଶେଷ ଭାଷା ଶିକ୍ଷା କରିବାକୁ ଚାହିଁଲେ, ତା ପାଇଁ ସେ ସୁବିଧା ପାଇ ପାରିବ ।

ଜାତୀୟ ଐକ୍ୟ ଦୃଷ୍ଟିରୁ ଅନ୍ତତଃ ହିନ୍ଦି ପାଇଁ ଏପରି ବ୍ୟବସ୍ଥା ଦେଶବ୍ୟାପି ରହିବା ଉଚିତ, ଯେପରି କୌଣସି ଆଭ୍ୟନ୍ତରୀଣ ଗ୍ରାମର କୃଷକ ବା ବଢ଼େଇ ମଧ୍ୟ ହିନ୍ଦି ଶିଖିବାକୁ ଚାହିଁଲେ, ସେ ଯଥୋଚିତ ସହାୟତା ପାଇ ପାରିବ । ଶିକ୍ଷା ବିଭାଗ ହୁଏତ ଏହି ନିୟମ କରିଦେଇ ପାରେ ଯେ, ହିନ୍ଦି ପଢ଼ିବା-ଲେଖିବାର କୌଣସି ସାର୍ଟିଫିକେଟ ଦେଖାଇ ନ ପାରିଲେ କେହି ମାଟ୍ରିକ୍ୟୁଲେଶନ ସାର୍ଟିଫିକେଟ ପାଇ ପାରିବେ ନି । ହିନ୍ଦି ପଢ଼ି-ବୁଝି-ପାରିବାର ସାର୍ଟିଫିକେଟ ଦେଖାଇ ପାରିଲେ, ଗାଁ ଓ ସହରର ସାଧାରଣ ଲୋକ କିଛି ପୁରସ୍କାର ପାଇବାର ବ୍ୟବସ୍ଥା ମଧ୍ୟ

କରିପାଇ ପାରେ; କିନ୍ତୁ ଜଣେ ଓଡ଼ିଆ ଛାତ୍ର ପ୍ରତି ଏ ଭାଷାର ବୌଦ୍ଧିକ ମୂଲ୍ୟ ବା ବ୍ୟାବହାରିକ ମୂଲ୍ୟ ଏତେ କମ୍ ଯେ, ଏ ଭାଷାକୁ ପୂରେଇ, ଜୀବନରେ ଅନ୍ୟ ଅତ୍ୟାବଶ୍ୟକ ଭାଷା ଓ ବିଷୟ ସବୁରୁ ମାଗି କରିବାର କୌଣସି ଆବଶ୍ୟକତା ନାହିଁ ବୋଲି ଏ ଲେଖକର ଦୃଢ଼ ମତ । ବାପୂଜୀ କହିଥିଲେ ଯେ, ଜଣେ ଭାରତୀୟର ଚଳନୀୟ ହିନ୍ଦି ଶିଖିନେବା ପାଇଁ ଛମାସରୁ ଅଧିକ ସମୟ ଲାଗିବ ନାହିଁ । ଆମ ପିଲାଙ୍କର ତ ବହୁତ ପ୍ରକାର ଛୁଟିରେ ବହୁତ ସମୟ ବୃଥା ନଷ୍ଟ ହୋଇ ଯାଉଛି । ବରଂ ସେହି ଛୁଟି ସମୟ ବ୍ୟବହାର କରାଇ ସେମାନେ ଅତି ସହଜରେ ହିନ୍ଦି ଜ୍ଞାନ ହାସଲ କରି ପାରନ୍ତି ।

## ଇଂରାଜିର ବ୍ୟାପକ ଉପଯୋଗିତା

କିନ୍ତୁ ଓଡ଼ିଶା ଭିତରେ, ଓଡ଼ିଶା ବାହାରେ ଓ ଭାରତ ବାହାରେ, ଏବଂ କେଉଁଠିକି ନ ଯାଇ, ଖାଲି ଘର ଭିତରେ ବସି ରହିଲେ ମଧ୍ୟ, ଯେଉଁ ଭାଷା ଆମର ସବୁ କ୍ଷେତ୍ରରେ ଉପକାର ଦେଇ ପାରିବ, ସେ ହିନ୍ଦି ନୁହେଁ କି ଓଡ଼ିଆ ନୁହେଁ, କି ସଂସ୍କୃତ ନୁହେଁ,—ସେ ହେଉଛି ଇଂରାଜି । ଇଂରାଜି ଆଜି କେବଳ ଇଂଲଣ୍ଡର ଭାଷା ହୋଇ ନାହିଁ, ତେଣୁ, ଆମର ଇଂରେଜ ଜାତି ପ୍ରତି ବିଦ୍ୱେଷ, ଇଂରାଜି ଭାଷା ଉପରେ ଅଜାଡ଼ିବାର କୌଣସି ଯଥାର୍ଥତା ନାହିଁ । ଇଂରାଜି ଆଜି ଆନ୍ତର୍ଜାତିକ ଭାଷା, ଇଂରାଜି ଆଜି ବିଶ୍ୱ ଭାଷା । ଇଂରାଜି ଆଜି ପୃଥିବୀର ସବୁ ଦେଶରେ ପଢ଼ା ହେଉଛି । ସେ ଦେଶମାନଙ୍କରେ ଇଂରେଜମାନେ ଜବରଦସ୍ତି ସେ ଭାଷାକୁ ନେଇ ନାହାନ୍ତି । ବରଂ ସେ ଭାଷାର ଅପରିହାର୍ଯ୍ୟତା ଓ ଉପକାରିତା ଅନୁଭବ କରି, ଅନେକ ଦେଶ, ସାମ୍ରାଜ୍ୟବାଦୀ ଇଂରେଜ ବିରୁଦ୍ଧରେ ବାହାରେ ଯେତେ ଗାଳି ଦେଲେ ମଧ୍ୟ, ଇଂରେଜର ଭାଷାକୁ ଆଗ୍ରହରେ ନିଜ ନିଜ ସ୍କୁଲ-କଲେଜରେ ଆପେ ଆପେ ଭର୍ତ୍ତି କରିଛନ୍ତି । ମାଓ-ତ୍ସେ-ତୁ ମାନେ ମଧ୍ୟ ଇଂରେଜକୁ ସମସ୍ତ ଏସିଆରୁ ତଡ଼ିବାର ସଙ୍କଳ୍ପ ଯୋଜନା କରିବା ସାଥେ ସାଥେ, ସମଗ୍ର ଚୀନ୍‌ରେ ଇଂରେଜକୁ ସାର୍ବଜନୀନ ଦ୍ୱିତୀୟ ଭାଷା ରୂପେ ଗ୍ରହଣ କରି ନେଇଛନ୍ତି ।

ଇଂରେଜଭାଷା ଦ୍ୱାରା ଗତ ଦେଢ଼ଶ-ଦୁଇଶ ବର୍ଷ ଭିତରେ ଭାରତବର୍ଷର କି ପ୍ରକାର ଅଶ୍ରୁତପୂର୍ବ ସାଂସ୍କୃତିକ ଅଭ୍ୟୁଦୟ ଘଟିଛି

ତାହା ଅଳ୍ପେ ବୁଝାଯାଉଛି । ଚୀନ, ଜାପାନ ଓ ଋଷିଆ ତୁଳନାରେ ଏ ଭାଷା ଆମ ଦେଶରେ ଅଧିକ ପ୍ରତିଷ୍ଠିତ ହୋଇ ସାରିଛି । ଅଥଚ ଆମେ ତାର ସୁଯୋଗ ନ ନେଇ, ରାଜନୈତିକ ଭାବ-ପ୍ରବଣତା ବା ହିନ୍ଦି-ସାମ୍ରାଜ୍ୟ ସ୍ଥାପନ ସ୍ୱପ୍ନରେ ତାକୁ ଏ ମାଟିରୁ ହଟାଅ ହଟାଅ କହି ଟୋଇଠା ମାନେବାରେ ଆମେ ଯେ ବୌଦ୍ଧିକ ଆତ୍ମହତ୍ୟା କରିବାକୁ ଯାଉଛେ, ଏଥିରେ ସନ୍ଦେହ ନାହିଁ ।

ଲେଖକର ମତରେ, ଜଣେ ଓଡ଼ିଆ ପକ୍ଷରେ କେବଳ ଦୁଇଟି ଭାଷାରେ ( ମାତୃଭାଷା ଓଡ଼ିଆ ଓ ବିଶ୍ୱଭାଷା ଇଂରାଜି ) ଧୁରନ୍ଧରତା ହିଁ ସବୁ କାମ ପାଇଁ ଯଥେଷ୍ଟ । ହିନ୍ଦି ସେ ଶିଖି ପାରନ୍ତି । କିନ୍ତୁ ହିନ୍ଦି ନ ଶିଖିବା ଦ୍ୱାରା ତାଙ୍କର ଭାରତୀୟତାରେ କୌଣସି ହାନି ଆସି ଯିବନି, ଯେପରି ଆସିନି ଶ୍ରୀ ରାଜଗୋପାଳାଚାରୀ ବା ଡକ୍ଟର ରାଧାକୃଷ୍ଣନଙ୍କ ଭାରତୀୟତାରେ । ମନେ ରଖିବାକୁ ହେବ ଯେ, କୋଟି କୋଟି ହିନ୍ଦି-ଭାଷୀ ହିଁ ଅଜ ଅସାମାଜିକ ଓ ଭାରତୀୟତା—ବିରୋଧୀ କର୍ମରେ ଲିପ୍ତ ରହି ଏ ଦେଶକୁ ଲଜ୍ଜା ଓ ଅପମାନ ଆଣୁଛନ୍ତି । ଏ ଭାଷା ସହିତ ଭାରତୀୟତ୍ୱର କୌଣସି ହେଲେ ଅଙ୍ଗାଙ୍ଗୀ ସମ୍ପର୍କ ନାହିଁ । କିମ୍ବା, ଏ ଭାଷା ଇଂରାଜି ଭାଷାର ବଦଳ ହୋଇ, କୌଣସି ଓଡ଼ିଆକୁ ଇଂରାଜି ଯେଉଁ ସବୁ ବୌଦ୍ଧିକ ସୁବିଧା ଘରେ ଓ ବାହାରେ ସବସ ଦେଇ ପାରିବ, ତାହା କେବେ ହେଲେ ଦେଇ ପାରିବ ନାହିଁ ।

ତେଣୁ ମାଧ୍ୟମିକ ସ୍ତରରେ କୋଠାରୀ କମିସନ୍ ଯେଉଁ ହିନ୍ଦି ବା ଇଂରେଜିର ବିକଳ୍ପ ଆମ ଆଗରେ ଥୁଆ କରିଛନ୍ତି, ତା ଭିତରେ ଏ ଲେଖକ ଅନ୍ତତଃ ଓଡ଼ିଶା ପାଇଁ, ଦୃଢ଼ଭାବରେ ପରାମର୍ଶ ଦେବ, ହିନ୍ଦିକୁ ସ୍ପର୍ଶ ନ କରି ଇଂରାଜିକୁ ହିଁ ଗ୍ରହଣ କରି ନେବା ପାଇଁ ଏବଂ ପୁଣି ଇଂରାଜି ଭାଷା ଉତ୍ତମ ଭାବରେ ଅଧୀତ ହେବା ଲକ୍ଷ୍ୟରେ, ସେ ଦୃଢ଼ ଭାବରେ କହିବ ଯେ, ହିନ୍ଦିକୁ ଅଯଥା ସିଲାବସରେ ନ ପୂରେଇ, ଇଂରାଜି ଓ ଜୀବନରେ ଅନ୍ୟାନ୍ୟ ଅତି ପ୍ରୟୋଜନୀୟ ବିଷୟ ଗୁଡ଼ିକୁ ଏବଂ ପିଲଙ୍କର ଗୁଡ଼ାଏ ମୂଲ୍ୟବାନ୍ ପିରିଅଡ଼କୁ, ଅଯଥା ନଷ୍ଟ ହେବାକୁ ନଅନ ।

ବର୍ତ୍ତମାନ ବିଚାର୍ଯ୍ୟ, ଓଡ଼ିଆ ଓ ଇଂରାଜି ପରେ ମଧ୍ୟ, [ଆଉ ଭାଷା ଆମ ପିଲେ ଶିଖିବେ କି ?]

## ସଂସ୍କୃତ ଓ ଓଡ଼ିଆ

ପ୍ରାଇମେରୀ ସ୍ତରରେ ଆମ ପିଲେ ଓଡ଼ିଆ 'ଭାଷା'ଟିକୁ ଉତ୍ତମ ରୂପେ ଜାଣିଥିବାର ଆମେ ଧରି ନେବା ।

ବର୍ତ୍ତମାନ ମାଧ୍ୟମିକ ସ୍ତରରେ ଲକ୍ଷ୍ୟହୀନ ଓ ଆଦର୍ଶହୀନ ଭାବରେ ଓଡ଼ିଆ-ପାଠ ସେହି 'ଭାଷା'-ଶିକ୍ଷା ଭାବରେହିଁ ଚାଲିଥାଏ । କିନ୍ତୁ ତାହା ହେବା ଉଚିତ ନୁହେଁ

ପାଠକେ ସ୍ମରଣ କରନ୍ତୁ, କୋଠାରି କମିସନ୍ ଆମର ହାଇସ୍କୁଲ ସବୁ କିପରି ସଭ୍ୟ ଦେଶମାନଙ୍କର ପ୍ରାଇମେରୀ ସ୍କୁଲମାନଙ୍କ ସହ ତୁଳନୀୟ ବୋଲି କହିଛନ୍ତି ।

ତେଣୁ, ଆମେ ମାଧ୍ୟମିକ ସ୍ତରରେ ଓଡ଼ିଆ-ପାଠର ମାନ ବଢ଼େଇବାକୁ ଚେଷ୍ଟା କରିବା । ତାର ଅର୍ଥ, ସେ ସ୍ତରରେ ପିଲେ ଯଥାମତ 'ଓଡ଼ିଆ-ସାହିତ୍ୟ'ର ଚର୍ଚ୍ଚା ଆରମ୍ଭ କରି ଦେବେ ।

କିନ୍ତୁ ଓଡ଼ିଆ ଭାଷା ଓ ସାହିତ୍ୟକୁ ଉତ୍ତମ ରୂପେ ଜାଣିବାକୁ ହେଲେ, ସଂସ୍କୃତ ଭାଷାରେ ପଣ୍ଡିତ ନ ହେଲେ ମଧ୍ୟ, 'ପ୍ରବେଶ' ଏକାନ୍ତ ଆବଶ୍ୟକ ଓ ଅପରିହାର୍ଯ୍ୟ ।

ତେଣୁ "ଉଚ୍ଚ ଓଡ଼ିଆ ଓ ନିମ୍ନ ସଂସ୍କୃତ"କୁ ମିଶାଇ ଆମେ ଗୋଟାଏ ପେପର୍ ପିଲଙ୍କୁ ମାଧ୍ୟମିକ ସ୍ତରରେ ପଢ଼େଇଲେ, ପିଲଙ୍କର ଓଡ଼ିଆ ଜ୍ଞାନଟା ପକ୍କା ହୋଇ ଉଠିବ । ଏବେ ସଂସ୍କୃତ ଓ ଓଡ଼ିଆ, ଦୁଇଟା ପରସ୍ପର-ସମ୍ପର୍କ-ହୀନ ; ଅଲଗା ଅଲଗା ଭାଷା ରୂପେ ପଢ଼ା ହେଉଛନ୍ତି, ଯାହା କି ଅନୁଚିତ । କିନ୍ତୁ ଆମେ ଓଡ଼ିଆ ଓ ସଂସ୍କୃତକୁ ପରସ୍ପର-ସହିତ-ଘନିଷ୍ଠ-ସଂଯୁକ୍ତ-ଥିବା ପରି ପିଲଙ୍କୁ ପଢ଼େଇଲେ, ପିଲଙ୍କର ସଂସ୍କୃତ ପ୍ରତି ଅଧିକ ଆଗ୍ରହ ହେବ ଏବଂ ଓଡ଼ିଆ ସେହି ଅନୁସାରେ ପରିପକ୍ୱ ହେବ ।

## ଆଧ୍ୟାତ୍ମିକ ଉତ୍କର୍ଷ ଓ ସଂସ୍କୃତ

ପୁଣି, ସଂସ୍କୃତର ଏକ ଆଧ୍ୟାତ୍ମିକ ଉପଯୋଗିତା ମଧ୍ୟ ଅଛି, ଯାହାକି ପୃଥିବୀର ଅନ୍ୟ କୌଣସି ଭାଷାରେ ନାହିଁ । ଭାରତୀୟ ଧର୍ମ ଓ ସଂସ୍କୃତିର ଆଧାର ହେଲା ସଂସ୍କୃତ । ପ୍ରତ୍ୟେକ ଭାରତୀୟ ପିଲା ତେଣୁ ସଂସ୍କୃତ ସହିତ

ପରିଣତ ଥିବା ଉଚିତ । ମାଧ୍ୟମିକ ସ୍ତରର ପରିଚୟ, ପରେ ବ୍ୟକ୍ତିଗତ ଇଚ୍ଛା ଓ ଆବଶ୍ୟକତା ନେଇ, ଘନିଷ୍ଠତାରେ ପରିଣତ ହେବ । ଆମର ତେଣୁ କର୍ତ୍ତବ୍ୟ, ପିଲଙ୍କୁ ମାଧ୍ୟମିକ ସ୍ତରରେ ଓଡ଼ିଆ ଭାଷାର ମୂଳଦୁଆ ରୂପେ ଓ ଆମ ସଂସ୍କୃତିର ଭିତ୍ତି ରୂପେ, ସଂସ୍କୃତ ସହିତ ପରିଚିତ କରାଇ ଦେବା ।

ତେଣୁ, ମାଧ୍ୟମିକ ସ୍ତରରେ ଓଡ଼ିଆ, ଇଂରାଜୀ ଓ ସଂସ୍କୃତ, ଆମ ପିଲେ ଏହି ତିନୋଟି ଭାଷାହିଁ ପଢ଼ିବେ । ଏକ ଚତୁର୍ଥ ଭାଷା ରୂପେ, ବୌଦ୍ଧିକ ମୂଲ୍ୟହୀନ ଓ ବ୍ୟାବହାରିକତାହୀନ ହିନ୍ଦିକୁ ପିଲାବସରେ ପୂରାଇ ସମଗ୍ର ପିଲାବସକୁ ଲଣ୍ଡଭଣ୍ଡ କରିବାର କୌଣସି ହେଲେ ଆବଶ୍ୟକତା ନାହିଁ । ଐକ୍ୟବୋଧ ପାଇଁ ଇଂରାଜୀହିଁ ଜାତିର ଉପର-ସ୍ତରରେ ଯଥେଷ୍ଟ ହୋଇ ଆସିଛି ଏବଂ ତାହା ସେହିପରି ରହିବ । ନିମ୍ନସ୍ତରର ଆନ୍ତ-ପ୍ରାଦେଶିକ ଭାବ-ବିନିମୟ ପାଇଁ ହିନ୍ଦି ଅବଶ୍ୟ ଉପଯୋଗୀ, କିନ୍ତୁ ତାହା ବାହାରେ ଏତେ ସହଜରେ ହୋଇ ପାରିବ ଯେ, ତାପାଇଁ ପିଲାବସକୁ ଓଲଟପାଲଟ କରି, ଜ୍ଞାନର ମାନଦଣ୍ଡକୁ ଧୂଳିସାତ୍ କରିବାକୁ କୌଣସି ଯଥାର୍ଥତା ନାହିଁ ।

## କଲେଜରେ ଶିକ୍ଷାର ମାଧ୍ୟମ

ମାଧ୍ୟମିକ ସ୍ତରରେ ପିଲେ ପାଠ ପଢ଼ିଲେ ଓଡ଼ିଆ ମାଧ୍ୟମରେ । ତେଣୁ କଲେଜରେ ମଧ୍ୟ ବିଦ୍ୟାର ମାଧ୍ୟମ ଓଡ଼ିଆ ହେବାହିଁ ସ୍ୱାଭାବିକ ଓ ଯୁକ୍ତିଯୁକ୍ତ । ଏବଂ ଏହା ମଧ୍ୟ ଶୀଘ୍ର ହେବା ଉଚିତ । କିନ୍ତୁ ରାଜନୈତିକ ଭାବପ୍ରବଣତାରେ ଭାସି ଯାଇ ଆମେ ବହୁ ବର୍ଷକୁ ଇତିମଧ୍ୟରେ ମାଙ୍କଡ଼ କରି ସାରିଛେ; ତେଣୁ ଏ କ୍ଷେତ୍ରରେ ଟିକିଏ ଧୈର୍ଯ୍ୟ, ଟିକିଏ ସାବଧାନତା ଦରକାର ।

ଆମେ ଏ ସ୍ତରରେ ଆଗକୁ ଲମ୍ଫପ୍ରଦାନ କରିବା ପୂର୍ବରୁ ପଛକୁ ଅନାଇ ନିଜକୁ ପଚାରିବା ଉଚିତ । ହାଇସ୍କୁଲ ସ୍ତରରେ ଇଂରାଜୀ-ମାଧ୍ୟମକୁ ହଟାଇ ଦେଇ, ଓଡ଼ିଆ ଯେ କଲେ, ଏଇ କୋଡ଼ିଏ ବର୍ଷ ଧରି, ତାର ଫଳ ଏତେ ନୈରାଶ୍ୟଜନକ କାହିଁକି ହୋଇଛି ? ସେଠୁ ତ ଇଂରେଜୀ ଥିଲା ବୋଲି, ଇଂରେଜୀ ହଟିଛି । କିନ୍ତୁ ରାଜନୈତିକ ସମରାଜ୍ୟ ପରି, ବୌଦ୍ଧିକ ସମରାଜ୍ୟର ଅଭ୍ୟୁଦୟ ହେଲା ନାହିଁ କାହିଁକି ? ତେଣୁ କଲେଜ ସ୍ତରରେ ଇଂରେଜୀକୁ ହଟାଇବା ପୂର୍ବରୁ, ହାଇସ୍କୁଲ ସ୍ତରରେ ଇଂରାଜୀ ହଟେଇବାର ପ୍ରତିକ୍ରିୟାଟାକୁ ବିଶ୍ଳେଷଣ କରି ଦେଖିବା ଆମର ଦରକାର ଉଚିତ ନୁହେଁକି ?

ପୁଣି ଓଡ଼ିଶାରେ ଫିଜିକସ୍, କେମିଷ୍ଟ୍ରି, ବୋଟାନି, ମେଡିସିନ୍, ଇଂଜିନିୟରିଂ ଇତ୍ୟାଦି ଜଟିଳ ବିଷୟମାନଙ୍କ ଉପରେ ମାଳ ମାଳ, ପାଠ୍ୟ ପୁସ୍ତକ ଆମକୁ ଓଡ଼ିଆରେ ଥୋଇବାକୁ ହେବ । ଏ କାମ କ'ଣ ଏତେ ସହଜ ? ଏହାର ପୁଣି ଅର୍ଥନୈତିକ ଦିଗ ଅଛି । ଏ ଦିଗରେ ଏହି ଲେଖକର ସାମାନ୍ୟ ଅଭିଜ୍ଞତା ମଧ୍ୟ ଅଛି । ଓଡ଼ିଆ ଏନ୍‌ସାଇକ୍ଲୋପିଡ଼ିଆ ପାଇଁ ଗୋଟିଏ ଗୋଟିଏ ବିଜ୍ଞାନ-ବିଷୟ ପାଇଁ ଅଧ-ଡଜନେ ଚିଠି ଲେଖି ମଧ୍ୟ ଧୁରନ୍ଧରମାନଙ୍କଠାରୁ ଖଣ୍ଡେ ଖଣ୍ଡେ ପ୍ରବନ୍ଧ ଆମେ ପାଇ ନାହୁଁ । କେହି କେହି ସାଧୁ ଭାବରେ ଚେଷ୍ଟା କରି ଶେଷରେ "ଓଡ଼ିଆରେ ଏ ହୋଇ ପାରିବନି" କହି ଆମର ଆସାଇନ୍‌ମେଣ୍ଟ ଫେରାଇ ମଧ୍ୟ ଦେଇଛନ୍ତି ।

ଏ ହେଲା ଏକ ଏକ ପ୍ରବନ୍ଧର ବ୍ୟାପାର । ତେଣୁ କଲେଜ ସ୍ତରରେ ବିନା ଯଥୋଚିତ ପ୍ରସ୍ତୁତିରେ, ଓଡ଼ିଆ ମାଧ୍ୟମ ପ୍ରବର୍ତ୍ତିତ କରିଦେଲେ ଆମେ କେବଳ ବିଭ୍ରାଟର ହିଁ ସମ୍ମୁଖୀନ ହେବା । ଅବଶ୍ୟ ହିନ୍ଦୀ ବା ବଙ୍ଗଳାରେ, ସକଳ ପାଠ୍ୟ ପୁସ୍ତକ ଲେଖା ହୋଇଗଲେ, ଓଡ଼ିଆରେ ସେ ସବୁ କରିବାରେ ବହୁ ଶ୍ରମ ଲାଘବ ହେବ । ଅନ୍ତତଃ ସେ ପର୍ଯ୍ୟନ୍ତ, ଅପେକ୍ଷା କରିଯାଉ ।

### ଆସ୍ତେ ପଦ ପକାଅ ଓ ପ୍ରସ୍ତୁତ ହୁଅ

ତେଣୁ ଧୈର୍ଯ୍ୟର ସହିତ ଏ ପରିବର୍ତ୍ତନ ଆଡ଼କୁ ଗତି କରିବା ଉଚିତ । ଫରାସି ଭାଷାରେ ଷ୍ଟାଣ୍ଡାର୍ଡ଼ ଅଭିଧାନଟିଏ କରିବା ପାଇଁ ଫ୍ରେଞ୍ଚ ଆକାଡେ଼ମୀ ପଚିଶ ବର୍ଷ ନେଇଥିଲା । ଇଂରାଜୀରେ ବୃହତ୍ ଅକ୍‌ସଫୋର୍ଡ଼ ଅଭିଧାନଟି ପୂର୍ଣ୍ଣ କରିବାକୁ ସତୁରି ବର୍ଷ ଲାଗିଥିଲା । ଉଚ୍ଚଦରର ବୌଦ୍ଧିକ କର୍ମରେ ଏହି ପ୍ରକାର ଧୈର୍ଯ୍ୟ ଦରକାର । ତରତରିଆ, ଭାବ ପ୍ରବଣତା, ସଦ୍ୟ ସଦ୍ୟ ସିଦ୍ଧି ପାଇଯିବାର ଅଭିଳାଷ, ବୌଦ୍ଧିକ କୃତକାର୍ଯ୍ୟତାର ପରମ ଶତ୍ରୁ ।

ତେଣୁ ଯଦି ଆମେ କଲେଜ ସ୍ତରରେ ଓଡ଼ିଆ ମାଧ୍ୟମ ପ୍ରବର୍ତ୍ତିତ କରିବାକୁ ସ୍ଥିର କରିବା, ତେବେ ସେଥିପାଇଁ ଆମକୁ ଆଜିଠାରୁ ଯୋଜନା କରିବାକୁ ହେବ । ସେ ପୁଣି ବିଶାଳ ଯୋଜନା । ସେ ଯୋଜନା ପୁଣି ଯୋଗ୍ୟ ଲୋକ ହାତରେ ରହିବା ଉଚିତ । ନଚେତ୍ କେବଳ ଅର୍ଥର ଶ୍ରାଦ୍ଧ ହେବ ମାତ୍ର, ଯେପରି ହୋଇ ଚାଲିଛି ଆମର ସରକାରୀ ତଥାକଥିତ

ସାଂସ୍କୃତିକ ସଂସ୍ଥାମାନଙ୍କରେ । ନଜର ନାହିଁ ଜାତି ଉପରେ ବା ଜାତି ଉପରେ, ନଜର ରହୁଛି କେବଳ କେଉଁ ଗୋଷ୍ଠୀର ଲୋକ ଚୌକି ମାଡ଼ି ବସିବେ । ଏ ଦୃଷ୍ଟି କ'ଣ ନ ବଦଳିଲାପାଏ ଏ ଜାତିର ଅଭ୍ୟୁଦୟ ସମ୍ଭବ କି ? ଖାଲି ଭାଷା ପରିବର୍ତ୍ତନ କରିଦେଲେ, କ'ଣ ଅସମ୍ଭବ ସମ୍ଭବ ହୋଇଯିବ ?

ଇ ଭିତରେ ଓଡ଼ିଆ ପିଲେ ସର୍ବଭାରତୀୟ ପରୀକ୍ଷା ମାନଙ୍କରେ ଅତ୍ୟନ୍ତ ସନ୍ତୋଷଜନକ କୃତିତ୍ୱ ଯେ ଦେଖାଇ ଆସୁଛନ୍ତି ତାର ମଧ୍ୟ ଏକ ମୁଖ୍ୟ କାରଣ ହୋଇପାରେ ଯେ ଆମର ଏଠି ଆଜମ ଏପର୍ଯ୍ୟନ୍ତ ଇଂରାଜୀକୁହିଁ ବିଶ୍ୱବିଦ୍ୟାଳୟ ଶିକ୍ଷାର ମାଧ୍ୟମ କରି ରଖିଛୁ ।

ଏତେଦିନ ପରେ ଓଡ଼ିଆଏ ଯେଉଁ ସୁବିଧାଟା ପାଉଛନ୍ତି, ହୁଏତ ଓଡ଼ିଆ ମାଧ୍ୟମ ପ୍ରବର୍ତ୍ତିତ ହେଲେ, ସେତିକ ବି ହରେଇ ବସିବେ ।

ତେଣୁ, ଆମର ଶାସକ ଓ ଶିକ୍ଷାବିତ୍‌ବର୍ଗ ଏ ଦିଗଟା ବି ଗମ୍ଭୀର ଭାବରେ ଚିନ୍ତା କରିବାର କଥା । କାରଣ, ସର୍ବଭାରତୀୟ ପ୍ରତିଯୋଗୀତାରେ ଇଂରାଜୀ ତ ନିଶ୍ଚୟ ରହିବ । ନେହୁରୁ ଏହାକୁ ଆସୋସିଏଟ୍ ( ସଙ୍ଗୀ ) ଭାଷା ନାମ ଦେଇ ଏହା ହିନ୍ଦୀର ଚିର ବିକଳ୍ପ ହୋଇ ରହିବାର ଘୋଷଣା କରି ଯାଇଛନ୍ତି । ଆମେ ତେଣୁ ସବୁ ଅବସ୍ଥା ଓ କ୍ଷେତ୍ରରେ କାମ ଦେଇ ପାରିବା ଇଂରାଜୀକୁ ଛାଡ଼ି, ହିନ୍ଦୀକୁ ଧରିବା କାହିଁକି ?

ଜଗତରେ ବଞ୍ଚି ରହିବା ପାଇଁ ଜାଣି ଜାଣି ଅନେକ ଜଞ୍ଜାଳ ବରଣ କରିବାକୁ ବା ସହିବାକୁ ହୁଏ । ସେଥିପାଇଁ ପ୍ରାଚୀନ ଗ୍ରୀକ୍‌ମାନେ ସ୍ତ୍ରୀ ଲୋକଙ୍କୁ ବର୍ଣ୍ଣନା କରିଥିଲେ, **Necsseary evil** ( ଆବଶ୍ୟକୀୟ ଅହିତ ! )

ତେଣୁ, ଆମେ ଜାଣୁଛୁ ଯେ ଇଂରେଜି ପରି ଏକ ବିଦେଶୀ ଭାଷାକୁ ଆମ ପିଲାଙ୍କର ପାଠର ମାଧ୍ୟମ କରିବା ଏକ ଅଶୋଭନୀୟ ଓ ଅଯୌକ୍ତିକ କର୍ମ । କିନ୍ତୁ ତେଣେ ଆମ ଘରେ ତାର ବଦଳ ନାହିଁ । ଆମ ନିଜ ଭାଷା ଦୁର୍ବଳ ଓ ଅଭାବଗ୍ରସ୍ତ । ଯେ ପର୍ଯ୍ୟନ୍ତ ସେ ଇଂରାଜୀର ସକଳ ଭାବ ବହନ କରିବାକୁ ଉପଯୁକ୍ତ ହୋଇ ନାହିଁ, ଏବଂ ଯେ ପର୍ଯ୍ୟନ୍ତ ଆମକୁ ସେ ଇଂରାଜୀର ସୁବିଧା ଦେଇ ପାରିନି, ଆମକୁ ଇଂରାଜୀର ଆଶ୍ରୟ ନେବାକୁହିଁ ପଡ଼ିବ । ବରଂ ଏହାକୁ ସନ୍ତୁଷ୍ଟ ଚିତ୍ତରେ ଗ୍ରହଣ କରି ନେଲେ, ଉଭୟ ପକ୍ଷରେ ଭଲ ।

( ୩ )

## ଶିକ୍ଷା-ବ୍ୟବସ୍ଥାର ସୋପାନ ଶ୍ରେଣୀ

ପାଠକେ ମନେ ରଖିବେ ଯେ, ଇ ଭିତରେ ଯେତେ ସବୁ କମିଟି-କମିଶନ୍ ବସିଗଲଣି "ଶିକ୍ଷା-ସଂସ୍କାର" ଆଣିବା ପାଇଁ, ତାର ମୂଳ ହେତୁ ହେଲା ଏହି ଯେ, ଆମେ ନିଜେଇ ଆମର ଗ୍ରାଜୁଏଟ୍, ମାଟ୍ରିକୁଲେଟ୍, ଅର୍ଥାତ୍ ସାଧାରଣ ତଥା କଥିତ 'ଶିକ୍ଷିତ' ଲୋକ ଉପରେ ସନ୍ତୁଷ୍ଟ ନୋହୁ । ଆମର କଲେଜମାନଙ୍କରୁ ଯେଉଁ ବି.ଏ. ବା ଏମ୍. ଏ. ବାହାରୁଛନ୍ତି, ସେ ସବୁ ଯଦି ଆଶାନୁରୂପ ହେଉଥାନ୍ତେ, ତେବେ ଶିକ୍ଷାର "ସଂସ୍କାର" ଦରକାର ପଡ଼ନ୍ତା କାହିଁକି ?

ଏଦେଶର ସେହି "ଶିକ୍ଷିତ" ଲୋକର ଗୁଣାତ୍ମକ ଉନ୍ନତି ଆଣିବା ଲକ୍ଷ୍ୟରେହିଁ ଦଶବର୍ଷ ତଳେ, ଆମେ ପାଗଳଙ୍କ ପରି, ଯାହାଥିଲା ୨+୨=୪ (ଅର୍ଥାତ୍ ଆଇ.ଏ+ବି.ଏ) ତାକୁ ଭାଙ୍ଗି ଦେଇ ୧+୩=୪ କରି ଦେଇ (ଅର୍ଥାତ୍ ପ୍ରି-ୟୁନିଭରସିଟି, ପ୍ରି-ପ୍ରଫେସନାଲ ଓ ତିନିବର୍ଷିଆ ଡିଗ୍ରି କୋର୍ସ) ଭାବିଲୁ ଯେ, ଏହାଥିରେ ତ ଆମର ଆସିଗଲା ଶିକ୍ଷାର "ବିପ୍ଳବ" ଓ "ଉନ୍ନତି" । ତାର ଦଶବର୍ଷ ତଳେ ପୁଣି 'ବେସିକ୍' ନେଇ ଏଇମିତି ଦଳେ ମାତିଲେ । ଏଥିରେ ମତାମତ ଯେତେ ଥିଲା, ସେତେ ନ ଥିଲା, ଚିନ୍ତାଜ୍ଞାନ । ପୁଣି ସେଥିରେ ମିଶିଲା ଆସି ଶାସନିକ ସୁବିଧା ନେଇ, ଏକ ରାଜନୈତିକ ଦଳର ଅପରୋକ୍ଷ ବାଧ୍ୟବାଧକତା ।

କିନ୍ତୁ ଏ ସବୁ ତଥା କଥିତ "ବିପ୍ଳବ" ଧୂଆଁ ହୋଇ ଯାଇଛି । ଆମ ଗ୍ରାଜୁଏଟ୍ ଓ ମାଟ୍ରିକୁଲେଟ୍ ମାନଙ୍କର ମାନଦଣ୍ଡ ତଳକୁ ତଳକୁ ଯାଉଛି ସିନା, ସେମାନଙ୍କର ସାମାନ୍ୟ ଉନ୍ନତି ଦେଖା ଦେଇନି ।

ସୁଖର କଥା, ଓଡ଼ିଶା ସର୍କାର "ହାଇଏର ସେକେଣ୍ଡାରୀ" ନାମ ଧାରଣ କରିଥିବା, ନକଲି କଲେଜ ସବୁକୁ ଉଠାଇ ଦେଇଛନ୍ତି । ଏହା ଯଥେଷ୍ଟ ସତ୍‌ସାହସର ପରିଚୟ । ବର୍ତ୍ତମାନ କୋଠାରି କମିସନ୍‌ଙ୍କ ଦୁଇ-ବର୍ଷିଆ ହାଇଏର ସେକେଣ୍ଡାରୀ ରେକମେଣ୍ଡେସନ୍‌କୁ ମାନି, ଅଧିକ ସତ୍‌ସାହସ ଧରି, ଆମକୁ ବରଂ ପୁଣି ପୂର୍ବର ଆଇ. ଏ-ଆଇ. ଏସ୍‌ସିକୁ ଫେରି ଯିବାକୁ ହେବ । ତାହା ବ୍ୟବସ୍ଥାକୁ ସରଳୀକୃତ କରିବ ଏବଂ ତାକୁ ଆଣିଦେବ ଅଧିକ ନିପୁଣତା ।

କୋଠାରି କମିସନ୍, ହାଇଏର ସେକେଣ୍ଡାରିକୁ ବର୍ଷିକିଆ ପର୍ବବର୍ତ୍ତରେ ଦୁଇବର୍ଷିଆ କରିବାକୁ ସୁପାରିଶ କରିଛନ୍ତି । ଅର୍ଥାତ୍ ସେହି ଦୁଇବର୍ଷର ଇଣ୍ଟର ମେଡ଼ିଏଟ୍ କୋର୍ସ ।

କିନ୍ତୁ ଯେ ହେତୁ ଓଡ଼ିଶା ଏହି ଇଣ୍ଟର ମେଡ଼ିଏଟ୍ କ୍ଲାସକୁ ହାଇସ୍କୁଲ ସାଥିରେ ନ ରଖିବାର ସ୍ଥିର କରି ସାରିଲାଣି' ସେ ବ୍ୟବସ୍ଥାର ପୁନଃ ପ୍ରବର୍ତ୍ତନ ଅଉ ଦର୍କାର ନାହିଁ । ବରଂ ସେ କାମ ଠିକ୍ ହୋଇଛି ବୋଲି ଧରିବାକୁ ହେବ ।

କିନ୍ତୁ ଅନ୍ୟ ପକ୍ଷରେ, ଡିଗ୍ରୀ ଓ ପୋଷ୍ଟ-ଗ୍ରାଜୁଏଟ୍ ଅନୁଷ୍ଠାନ ସହିତ, ଇଣ୍ଟରମେଡ଼ିଏଟ୍ ଶ୍ରେଣୀ ସବୁ ଯୋଡ଼ା ହେବା ଆଦୌ ବାଞ୍ଛନୀୟ ନୁହେଁ, ଯେପରି ଆମ ଓଡ଼ିଶାରେ ଆମେ ଘଟିବାର ଦେଖୁଛୁ, ରେଭେନ୍‌ସା, ଖଲିକୋଟ, ଓ ମେହେର କଲେଜ ପ୍ରଭୃତିରେ ।

ବିଶ୍ୱବିଦ୍ୟାଳୟ, ଅର୍ଥାତ୍ ଡିଗ୍ରୀ ଓ ପୋଷ୍ଟ ଗ୍ରାଜୁଏଟ୍ ସ୍ତରରେ ଅନୁଷ୍ଠାନିକ ବାୟୁମଣ୍ଡଳ, ହାଇସ୍କୁଲର ଆନୁଷ୍ଠାନିକ ବାୟୁ-ମଣ୍ଡଳଠାରୁ ସମ୍ପୂର୍ଣ୍ଣ ଭିନ୍ନ ରହିବା ଉଚିତ ।

ଏବେ କଲେଜମାନଙ୍କରେ ଗୋଳମାଳ, ଗଣ୍ଡଗୋଳ ଓ ବିଶୃଙ୍ଖଳା କିନ୍ତୁ, ବିଶେଷ ଭାବରେ ବୋଧହୁଏ ଏଇ ପ୍ରି-ୟୁନିଭରସିଟି ଓ ପ୍ରି-ପ୍ରଫେସନାଲଙ୍କୁ ନେଇ । ସ୍ଥାନ ପାଇଁ, ବାଡ଼ଆବାଡ଼ି, ବିଶେଷତଃ ବିଜ୍ଞାନ ଶ୍ରେଣୀରେ, କେବଳ ଏଇ ସ୍ତରରେ । ବି. ଏ., ବି. ଏସ୍‌ସି. ବେଳକୁ ଅଧିକାଂଶ କଲେଜରେ ବେଞ୍ଚ୍ ଖାଲି ।

ଆମେ କିନ୍ତୁ ଇ-ଭିତରେ ଗାଁଏଁ ଗାଁଏଁ ଡିଗ୍ରୀ-କଲେଜହିଁ ବସେଇ ଚାଲିଲବେଳକୁ, କୋଠାରି କମିସନଙ୍କ ମତରେ ଆମର କଲେଜ୍ ଷ୍ଟାଣ୍ଡାର୍ଡ ଅନ୍ୟ ଦେଶର ହାଇସ୍କୁଲ ଷ୍ଟାଣ୍ଡାର୍ଡ଼ର ସ୍ତରକୁ ଖସି ଆସିଲାଣି । ଏତେ ଦୁର୍ଣ୍ଣଙ୍ଗ ଡିଗ୍ରୀ କଲେଜ ଠିଆ କରାଇବା ପାଇଁ ଆମର ସମ୍ବଳ ବା କାହିଁ ? ଆମେ କେବଳ ଅଜ୍ଞତା ଓ ଅନ୍ଧମୋହରେ ପଡ଼ି ଓ ସ୍ଥାନୀୟ ଅଭିମାନରେ ଭସି ଯାଇ, ଘର ନାହିଁ, ଲାଇବ୍ରେରି ନାହିଁ, ଲାବୋରେଟରି ନାହିଁ, ଷ୍ଟାଫ୍ ନାହିଁ,—ଅଥଚ ଏହିପରି ଭାବରେ ତଥାକଥିତ ଦରମଲା କଲେଜ ସବୁ ଠିଆ କରି ଚାଲିଛୁ । ଏହା ଦ୍ୱାରା ଦେଶର ସମୂହ କଲ୍ୟାଣ କେଉଁ ଦିଗରୁ ଯେ ଆସୁଛି, ବୁଝା ପଡ଼ୁନି । ବରଂ ମୂର୍ଖତାରହିଁ ପ୍ରସାର ଘଟୁଛି କହିବାକୁ

ହେବ । ଏ ସମ୍ପର୍କରେ 'ସମାଜ'ର ୮-୮-୧୯୬୭ ସମ୍ପାଦକୀୟ ସମ୍ପୂର୍ଣ୍ଣ ପାଦ-ଟୀକାରେ ଦେଖି ନିଅନ୍ତୁ ପାଠକେ । *

## ଜୁନିୟର କଲେଜ

ତେଣୁ ଏ ଲେଖକର ପ୍ରସ୍ତାବ ଏହିକି, କୋଠାରୀ କମିସନଙ୍କର ଦୁଇବର୍ଷିଆ ହାଇଏର ସେକେଣ୍ଡାରୀ ପରିବର୍ତ୍ତରେ, ଓଡ଼ିଶାରେ ବର୍ତ୍ତମାନ ଦରପନ୍ତରିଆ ସରକାରୀ ଓ ବେସରକାରୀ ନୂଆ ବସିଥିବା ଡିଗ୍ରୀ କଲେଜ-ଗୁଡ଼ିକୁ ଏକ ଏକ "ଜୁନିୟର କଲେଜ"ରେ ପରିଣତ କରି ଦେଇ, ଡିଗ୍ରୀ ଓ ପୋଷ୍ଟ ଗ୍ରାଜୁଏଟ୍ ଶ୍ରେଣୀ ଗୁଡ଼ିକୁ ମୁଖ୍ୟ ମୁଖ୍ୟ କଲେଜ ମାନଙ୍କରେହିଁ କେନ୍ଦ୍ରୀଭୂତ କରିବା ଉଚିତ । ଏହା ଦ୍ୱାରା ଡିଗ୍ରୀ ଓ ପୋଷ୍ଟ ଗ୍ରାଜୁଏଟ୍ କ୍ଳାସ୍ ସବୁ ଶାନ୍ତିପୂର୍ଣ୍ଣ ବାତାବରଣ ପାଇବେ ନିଜ ନିଜର କାମ କରିବାକୁ ଏବଂ ତେଣେ ଜୁନିୟର କଲେଜମାନଙ୍କରେ କେବଳ ଆଇ.ଏ.-ଆଇ.ଏସ୍. ସି. କ୍ଳାସ୍ ରହିବାରେ, ସେଗୁଡ଼ିକରେ ମଧ୍ୟ ଉତ୍ତମ ଅଧ୍ୟାପନା ହେବ ।

କଟକର ରେଭେନ୍‌ସା କଲେଜ କଥାହିଁ ଧରି ଯାଉ । ଏହାର ପ୍ରି-ୟୁନିଭରସିଟି ଓ ପ୍ରି-ପ୍ରଫେସନାଲ ଶ୍ରେଣୀ ଗୁଡ଼ିକ ଶୈକ୍ଷିକ ଦୃଷ୍ଟି କୋଣରୁହିଁ ଅଲଗା କରି ନେଇ କଟକରେ ଅନ୍ୟାନ୍ୟ ଏକ ସ୍ୱତନ୍ତ୍ର 'ଜୁନିୟର କଲେଜ' ଠିଆ କରେଇବା ତୁରନ୍ତ ଆବଶ୍ୟକ । କେବଳ ଏହି ବ୍ୟବସ୍ଥା

---

* "ଉଚ୍ଚ ଶିକ୍ଷାକୁ ସବୁ ପ୍ରକାରେ ଉତ୍ସାହିତ କରାଯିବା ଆବଶ୍ୟକ । କିନ୍ତୁ ସଂଖ୍ୟା ବଢ଼ାଇବାର ବ୍ୟାକୁଳତାରେ ଆବଶ୍ୟକ ଘର, ଉପକରଣ, ବୋର୍ଡ଼ିଂଘର, ଶିକ୍ଷକ, ଶିକ୍ଷୟିତ୍ରୀ, ଲାଇବ୍ରେରୀ ପ୍ରଭୃତିର ବ୍ୟବସ୍ଥା ନ କରି ଏପରି ସଂଖ୍ୟା ବଢ଼ାଇ ଦେବାଦ୍ୱାରା ଶିକ୍ଷା ଯେ କେବଳ ବାଧା ପାଉଛି ତାହା ନୁହେଁ; ଶିକ୍ଷକ ଶିକ୍ଷୟିତ୍ରୀ ଓ ଛାତ୍ର-ଛାତ୍ରୀମାନଙ୍କର ନୈତିକ ସମ୍ମାନର ଅଧଃପତନ ହେଉଛି । ପୂର୍ବେ କଲେଜମାନଙ୍କରେ ଯେପରି ଭାବରେ ସୁଶୃଙ୍ଖଳ ପଢ଼ାଶୁଣା ହେଉଥିଲା ତାହା ବର୍ତ୍ତମାନ ଆଉ ନାହିଁ । ପଢ଼ିବାକୁ ଓ ପଢ଼େଇବାକୁ ସମୟ ଅଣ୍ଟୁ ନାହିଁ । ଅଗଷ୍ଟ ମାସ ଅଧା ହେଲା, ଏ ପର୍ଯ୍ୟନ୍ତ ନାମ ଲେଖା ଶେଷ ହେଲା ନାହିଁ । ସପ୍ଲିମେଣ୍ଟାରୀ ପରୀକ୍ଷା ହେଉଥିବାରୁ ଅନେକ ଜାଗାରେ ପଢ଼ା ପଢ଼ି ହୋଇ ପାରୁ ନାହିଁ । ପଢ଼ା ଆରମ୍ଭ ହେଉ ହେଉ ଆହୁରି ୧୫ ଦିନ ଯାଏ । ତା ପରେ ଆସିଯିବ ପୂଜାଛୁଟି ।

ଫଳରେହିଁ ବିଦ୍ୟାପୀଠ ଭାବରେ, ରେଭେନ୍‌ସା କଲେଜ ଅଧିକ ଶାନ୍ତିପୂର୍ଣ୍ଣ ଓ ମର୍ଯ୍ୟାଦାବନ୍ତ ହୋଇ ଉଠନ୍ତା । ସେହିପରି ବରହମ୍‌ପୁରର ଖଲ୍ଲି କୋଟ କଲେଜ ଓ ସମ୍ବଲପୁରର ମେହେର କଲେଜକୁ ମଧ୍ୟ ଭାଙ୍ଗିଦେବା ଉଚିତ ।

ହାଇସ୍କୁଲ ଓ ବିଶ୍ୱବିଦ୍ୟାଳୟର ମଝିସ୍ତରରେ ପିଲାଙ୍କୁ ବିଶ୍ୱ-ବିଦ୍ୟାଳୟ ଅଧ୍ୟାପନାର ଉଚ୍ଚସ୍ତର ପ୍ରତି ଉପଯୋଗୀ କରି ଗଢ଼ିବା ପାଇଁ ଯୁକ୍ତରାଷ୍ଟ୍ର ଆମେରିକା ଓ ଅନ୍ୟାନ୍ୟ ଅନେକ ଦେଶରେ, "ଜୁନିୟର କଲେଜ" ସବୁ ଅଛି । ଭାରତବର୍ଷର ଉତ୍ତର ପ୍ରଦେଶରେ ଇଣ୍ଟର ମେଡ଼ିଏଟ୍ ଶ୍ରେଣୀ ସବୁ ସେକେଣ୍ଡାରୀ ବୋର୍ଡ଼ର ଅଧୀନସ୍ଥ । ସେପରି ହେବାର କୌଣସି ଯଥାର୍ଥତା ନାହିଁ । ସିନିୟର କଲେଜମାନଙ୍କ ପରି ଜୁନିୟର କଲେଜ ସବୁ ମଧ୍ୟ ବିଶ୍ୱବିଦ୍ୟାଳୟ ଅଧୀନରେ ରହିବାର ଉଚିତ । କୋଠାରୀ କମିସନ, ଇଂଲଣ୍ଡରେ ମଧ୍ୟ, ବିଶ୍ୱବିଦ୍ୟାଳୟ ସ୍ତରରେ, ପିଲେ ଡିଗ୍ରୀ-ପାଠକୁ ଯିବା ପୂର୍ବରୁ, ଏବେ ( Half-way Degre ) ବା "ଅଧା-ବାଟିଆ ଡିଗ୍ରୀ" ନାମରେ ଏକ ପରୀକ୍ଷା ଆରମ୍ଭ ହୋଇ ଥିବାର ଉଲ୍ଲେଖ କରିଛନ୍ତି । ଆମର ବି.ଏ. ଓ ଆଇ. ଏ, ଆଇ. ଏସ୍. ସିକୁ ପୂର୍ବପରି ନ ରଖି ସେ ସବୁକୁ ଜୁନିୟର ବି.ଏ. ଓ 'ଜୁନିୟର ବି. ଏସ୍‌ସି' ନାମ ରଖା ଯାଇପାରେ । ଲେଖକର ବିଶ୍ୱାସ । ଆମର ପ୍ରତ୍ୟେକଟି ଜିଲାରେ ଉତ୍ତମ ଷ୍ଟାଫ୍, ଘର, ଲାଇବ୍ରେରୀ ଓ ଲାବରେଟରୀ ଯୋଗାଇ ଦେଇ ଗୋଟିଏ ବା

---

ଛୁଟି ପରେ ପୁଣି ଦେଢ଼ ମାସ ଦୁଇ ମାସ ପଢ଼ା ହୋଇଥିବ କି ନାହିଁ ପୁଣି ପ୍ରି-ଟେଷ୍ଟ ପରୀକ୍ଷା ହେବ, ତା ପରେ ଡିସେମ୍ବର ମାସରେ ଟେଷ୍ଟ ପରୀକ୍ଷା ଓ ପରୀକ୍ଷା ପରେ ଛୁଟି । ତାର ଅଳ୍ପ ସମୟ ପରେ ପୁଣି ବିଶ୍ୱବିଦ୍ୟାଳୟ ପରୀକ୍ଷା । ଏଥିରେ ପିଲାଙ୍କୁ ପଢ଼ିବାକୁ ବେଳ କାହିଁ ? ଅନେକ ଜାଗାରେ କଲେଜ ଅଧ୍ୟାପକମାନେ ନିର୍ଦ୍ଦିଷ୍ଟ ସମୟ ମଧ୍ୟରେ ପୁରା ପାଠ ପଢ଼ାଇ ପାରୁ ନାହାନ୍ତି । ଏକା କଲେଜ ଘର ଓ ଉପକରଣ ସାହାଯ୍ୟରେ ତିନି ତିନିଦଫାରେ ପାଠ ପଢ଼ା ହେଉଥିବାରୁ ଓ ସେହି ଏକା ଅଧ୍ୟାପକ ପଢ଼ାଉଥିବାରୁ ଅଧ୍ୟାପନା କାର୍ଯ୍ୟରେ ନାନା ତ୍ରୁଟି ଓ ଅଭାବ ରହୁଛି । ଏହି ଅଭାବ ଦୂର ନ ହେଲେ ଏବଂ ସଂଯତ, ସୁଶୃଙ୍ଖଳିତ ଓ ଆବଶ୍ୟକ ସମୟ ପାଇଁ ପାଠ୍ୟ ବ୍ୟବସ୍ଥା ଓ ଅଧ୍ୟୟନ ଅଧ୍ୟାପନାର ବ୍ୟବସ୍ଥା ନ ହେଲେ ବହୁ ସଂଖ୍ୟାରେ ପିଲା ଫେଲ୍ ହେବା ସ୍ୱାଭାବିକ । କାର୍ଯ୍ୟରେ

ଷ୍ଠା, ସିଙ୍ଗପୁର ଡିଗ୍ରୀ କଲେଜ ରଖି, ବାକୀ ଅନ୍ୟ ସବୁ କଲେଜ ଗୁଡ଼ିକୁ ଜୁନିଅର କଲେଜହିଁ କରି ନେବା ଉଚିତ ।

## ଶିଶୁ ଶ୍ରେଣୀ

ଏଣେ ଉପରେ ଏ ପରିବର୍ତ୍ତନ ଆଣିଲା ବେଳେ, ତେଣେ ତଳ କୋଠାରି କମିଶନ୍ ଯେଉଁ ଅତ୍ୟାବଶ୍ୟକ ପରିବର୍ତ୍ତନ ସୂଚାନ୍ତି, ତାକୁ ମଧ୍ୟ ସର୍କାର ଧ୍ୟାନ ଦେବା ଉଚିତ ।

କମିଶନ୍ 'ପ୍ରାକ୍-ପ୍ରାଇମେରି' ବିଦ୍ୟାଳୟ ସବୁ ଖୋଲିବା ପାଇଁ ଖୁବ୍ ସୁପାରିଶ କରିଛନ୍ତି । ଯଦି ପ୍ରାକ୍-ପ୍ରାଇମେରି ବିଦ୍ୟାଳୟ ଖୋଲି ନ ପାରିଲେ, ପ୍ରତି ପ୍ରାଇମେରି ସ୍କୁଲ୍‌ରେ ଅନ୍ତତଃ ଗୋଟିଏ ଗୋଟିଏ ପ୍ରି-ସ୍କୁଲ ଶ୍ରେଣୀ ଖୋଲିବାକୁ କମିସନ୍ ସୁପାରିଶ୍ କରିଛନ୍ତି ।

ଶ୍ରେଷ୍ଠ ପିଲ ୬ ବର୍ଷ ବୟସରେ ବିଦ୍ୟାରମ୍ଭ କରିବା ପାଇଁ କମିସନ୍‌ଙ୍କର ସୁପାରିଶ ।

ତେଣୁ ୫ ବର୍ଷ ବେଳକୁ ଶିଶୁ ତା ଉପର ଭାଇ ବା ଭଉଣୀ ସାଥିରେ ଆସି ଇସ୍କୁଲ୍‌ରେ ଖାଲି ବସୁ ହେଲେ । ସ୍କୁଲ୍ ସହିତ ପରିଚିତ ହେଉ । ଖଡ଼ି ଦେଇ ଅକ୍ଷର ଶିଖୁ । ଏହାହିଁ ହେବ ଶିଶୁ ଶ୍ରେଣୀର କାମ । ଶିକ୍ଷାବିତ୍ ତଫସୀ ଏହା ବହୁକାଳ ଓଡ଼ିଶାରେ ଚଳାଇ ରଖିଥିଲେ । ଏହା ପ୍ରାଇମେରି ଶିକ୍ଷାରେ ବିଶେଷ ସାହାଯ୍ୟ କରୁଥିଲା । ଏବେ ପିଲେ ବର୍ଷେ ହରେଇ ବସିଲେ ଓ ସେହି ଅନୁକ୍ରମେ ପାଠ ଖଇରୁ ହେଉଛି । ପ୍ରାଇମେରି

---

ତାହା ହିଁ ଉଠିଛି । ତେଣୁ ସରକାର ଓ ସାଧାରଣ ଏ ସଂଖ୍ୟାବୃଦ୍ଧି ଉପରେ ଦୃଷ୍ଟି ନ ଦେଇ, କଲେଜ ଗୁଡ଼ିକର ସୁପରିଚାଳନା ଓ ଶିକ୍ଷାର ସୁବ୍ୟବସ୍ଥା ଦ୍ୱାରା ଶିକ୍ଷାର ଅନ୍ତତଃ ନୂନ୍ୟତମ ମାନ ରକ୍ଷା ପାଇଁ ଚେଷ୍ଟା କରନ୍ତୁ । ଏ ବିଷୟରେ ସୁଚିନ୍ତିତ ଯୋଜନା କରାଯାଉ । 'ଅକାଳେ ନାୟମୋନାସ୍ତି' ନୀତିରେ ବିଶୃଙ୍ଖଳା ଓ ଉଦ୍‌ଭ୍ରାନ୍ତ ଭାବରେ ଏ ଉଚ୍ଚଶିକ୍ଷା ଗତି କଲେ ଏହାର ପରିଣାମ ବଡ଼ ଖରାପ ହେବ ଏବଂ ଶିକ୍ଷାର ମାନ ଅତି ନିକୃଷ୍ଟ ଅବସ୍ଥାକୁ ଆସିଯିବ । ଏ ବର୍ଷ ଶତକଡ଼ା ୭୦ରୁ ଅଧିକ ପିଲା ଫେଲ୍ ହେବା ମୂଳରେ ଏ ପ୍ରକାର କାରଣ ରହିଛି । ତାର ଅନୁଧ୍ୟାନ ଓ ପ୍ରତିକାର ପ୍ରଥମ ଓ ଜରୁରୀ କର୍ତ୍ତବ୍ୟ ।"

ବେ ଓ୍ଡ଼ରେ ଆମେ କେତେକ, ଏଇ ଶ୍ରେଣୀର ପୁନରୁଦ୍ଧାର ପାଇଁ ବହୁ ପ୍ରାର୍ଥନା କରିଥିଲୁ । ତା' ପାଇଁ ସିଲବସ ବି ତିଆରି କରି ରଖିଥିଲୁ । କିନ୍ତୁ ହେଲାନି । ଆଶା କରେ, କୋଠାରି କମିଶନଙ୍କ ଶକ୍ତିଶାଳୀ ସୁପାରିଶ ସର୍କାରଙ୍କ ଚିତ୍ତ ବଦଳେଇବ ।

ଏହି ଶିଶୁ ଶ୍ରେଣୀକୁ ଗ୍ରହଣ କରିନେଲେ ଆମରି ବିଦ୍ୟାର ପାହାଚ ସବୁ ଏହିପରି ଠିଆ ହେବ—

ପ୍ରାକ୍-ପ୍ରାଇମେରି + ପ୍ରାଇମେରି + ସେକେଣ୍ଡାରି + ଜୁନିଅର୍ କଲେଜ + ସିନିୟର୍ କଲେଜ + ପୋଷ୍ଟ ଗ୍ରାଜୁଏଟ୍ ।

## କର୍ମାଭ୍ୟାସ

ଏହି ସ୍ଥାନରେ, କୋଠାରି କମିସନ୍ ଯାହା ଦୃଢ଼ ଭାବରେ କହିଛନ୍ତି ଏବଂ ଯାହା ମଧ୍ୟ ଏହି ଲେଖକର ମତ, ସେହି କଥାଟି ଉପରେ ସରକାର ଓ ଦେଶର ଶିକ୍ଷାବିତ୍ ଅଟଳ ଦୃଷ୍ଟି ଦେବେ ବୋଲି ମୋର ଆଶା ଓ ଅନୁରୋଧ ।

ପାଠକେ ମନେ ରଖିବେ ଯେ, ଆମର ସମଗ୍ର ଭାରତୀୟ ସଭ୍ୟତା ଓ ସଂସ୍କୃତି, ବାସ୍ତବରେ ଅତି ମହନୀୟ ଓ ମନୋଜ୍ଞ ହୋଇ ମଧ୍ୟ, ଅନ୍ୟାନ୍ୟ ସଭ୍ୟତା ସହିତ ପ୍ରତିଯୋଗିତାରେ ବାରଂବାର ହାରିଯିବାର କାରଣ, ଏ ସଭ୍ୟତା ମନୁଷ୍ୟର ମସ୍ତିଷ୍କ ଉପରେ, ମନନ ଉପରେ, ଯେତେ ନଜର ଦେଲେ, ସେତେ ଦେଲେନି, ସମଭାବରେ-ଆବଶ୍ୟକ, ମଣିଷର ଦି'ଟା ହାତ ଓ ସେଥିରେ ଥିବା ଦଶଟା ଆଙ୍ଗୁଳି ଉପରେ । ତା' ଫଳରେ ଆମ ସଭ୍ୟତା, ଆମର ଜାତୀୟ ଜୀବନ, ତାର ବାଲାନସ୍ ବା ସାନୁପାତିକତା ହରେଇ ବସିଛି । ଆମ ଦେଶରେ ଯିଏ ପ୍ରାଇମେରି ପାଠ ପଢ଼ି ଦେଲା, ସେ ବୋଲାଇଲା ନିଜକୁ 'ଏଡୁକେଟେଡ୍' ବା ଶିକ୍ଷିତ ଏବଂ ତାର ଜୀବନାଦର୍ଶ ହେଲା ଯେ ସେ କୌଣସି ଦୈହିକ ଶ୍ରମ କରିବ ନାହିଁ । ଏହା ଏକ ଘୋର ମାରାତ୍ମକ ଓ ଆତ୍ମଘାତୀ ମନୋଭାବ । ଏହି ମନୋଭାବହିଁ ଜାତି ଭାବରେ ଆଜି ଆମକୁ ସମଗ୍ର ବିଶ୍ୱରେ ହୀନ, ଦୀନ, ଅରକ୍ଷଣୀୟ ଓ ପରମୁଖାପେକ୍ଷୀ କରି ଠିଆ କରେଇଛି । ବେସିକ ଏଡୁକେଶନ୍ ଦେଇ ବାପୁଜୀ ଆମରି ଜାତୀୟ ଚରିତ୍ରରେ ଯୁଗ ଯୁଗ ଧରି ବଢ଼ି

ଆସିଥିବା ଏହି ଅସ୍ୱବସ୍ଥାକୁ ଦୂରୀଭୂତ କରିବାକୁ ଚେଷ୍ଟା କରୁଥିଲେ । ସମଗ୍ର ଭାରତବର୍ଷରେ ବୁଣ୍ଟିଏ ଏହି ଲେଖକ ବୋଧହୁଏ ଏକମାତ୍ର ସରକାରୀ ଲୋକ, ଯେ କି ବେସିକ୍ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରି, ଦଣ୍ଡିତ ହୋଇଛନ୍ତି । କିନ୍ତୁ ଅନେକେ ଜାଣନ୍ତି ନାହିଁ ଯେ, ଉତ୍ତର ଓଡ଼ିଶାର ଇନସ୍‌ପେକ୍ଟର ଭାବରେ, ଅଯାଚିତ ଭାବରେ, ଏହି ଲେଖକ ପ୍ରତି ସ୍କୁଲରେ ବେସିକ୍‌ର ଗୁରୁତ୍ୱ ଉପାଦେୟ ତତ୍ତ୍ୱ ସ୍କୁଲର ଦୈନନ୍ଦିନ ପ୍ରୋଗ୍ରାମର ଅଙ୍ଗୀଭୂତ କରିନେବା ପାଇଁ ସର୍କୁଲାର ଦେଇଥିଲା ( ଦେଖନ୍ତୁ, ଲେଖକର Dreams in Education ) । ଏବେ କୋଠାରୀ କମିସନ୍ ଠିକ୍ ସେହି କଥାଟି ସୁପାରିଶ୍ କରିଛନ୍ତି । ପର ପରିବାରର ଅକୁଶଳତା, ବ୍ୟବସ୍ଥାଗତ ପ୍ରମାଦ ଓ ଗୋଟିଏ ବିଶେଷ ଧନ୍ଦାକୁ ସର୍ବସୌଭାଗ୍ୟ ବିତରକ ଦେବତା ଆସନରେ ବସେଇ, ବାଲନ୍‌ସ ହରାଇବା ଫଳରେହିଁ 'ବେସିକ୍' ଏ ଦେଶରେ ବହୁକୋଟି ମୁଦ୍ରାର ବ୍ୟର୍ଥତାରେ ପରିଣତ ହେଲା । କିନ୍ତୁ ବେସିକ୍‌ର ଅନ୍ତର୍ନିହିତ ଶ୍ରମ-ମର୍ଯ୍ୟାଦା, ହସ୍ତ-କର୍ମ ବା ଉତ୍ପାଦନଶୀଳତା-ସମ୍ବଳିତ ଯେଉଁ ଜୀବନ-ଦର୍ଶନ, ତାକୁ ଆମେ ଆମର ଶିକ୍ଷା ଓ ଜୀବନର ଅଙ୍ଗାଙ୍ଗୀ ଭାବରେ ଗ୍ରହଣ ନ କଲେ, ଆମେ ଜାତି ଭାବରେ ଯେ ଠିଆ ହୋଇ ପାରିବାନି, ଏହା ବେଦ-ବାକ୍ୟ ବୋଲି ଧରିନେବା ଉଚିତ । କୋଠାରୀ କମିସନ୍ ସେଥିପାଇଁ ଆମ ଶିକ୍ଷା ବ୍ୟବସ୍ଥାର ସବୁ ସ୍ତରରେ Learning ( ଜ୍ଞାନାଭ୍ୟାସ ) ସାଥେ ସାଥେ Doing ( କର୍ମାଭ୍ୟାସ ) ର ବ୍ୟବସ୍ଥା ରଖିବାକୁ ଦୃଢ଼ ସୁପାରିଶ୍ କରିଛନ୍ତି । କମିସନ୍ ଏହାକୁ ନୂଆ ନାଁ ଦେଇଛନ୍ତି—Work-Experience ବା କର୍ମାନୁଭୂତି । ଆମକୁ ପ୍ରାଇମେରୀ ସ୍ତରରୁ ଆମର ଭବିଷ୍ୟତ ନାଗରିକଙ୍କ ଭିତରେ ଜିଜ୍ଞାସା ( ଜାଣିବାର ଇଚ୍ଛା ) ପରି ଚିକୀର୍ଷା ( କରିବାର ଇଚ୍ଛା ) ମଧ୍ୟ ଜାଗ୍ରତ କରାଇବାକୁ ହେବ । ଏବେ ଶିକ୍ଷାର ମାନଦଣ୍ଡ ଏତେ ତଳକୁ ଖସିବାର ଏକ ଗୁରୁତର କାରଣ ହେଲା, ଲିଖନାଭ୍ୟାସର ଅତ୍ୟନ୍ତ ଅଭାବ । ଆମ ପିଲାବେଳେ, ହସ୍ତାକ୍ଷର, ଶ୍ରୁତଲିଖନ, ଚିଠି, ପ୍ରବନ୍ଧ, ପ୍ରଶ୍ନୋତ୍ତର ଦେଇ ଆମେ ଯେତେ ଲେଖୁଥିଲୁ, ଏବେ ସେ ସବୁ ନାହିଁ । କିନ୍ତୁ ଆମେ ଭୁଲି ଯାଉ ଯେ, ଯେ କୌଣସି ମାନସିକ ସିଦ୍ଧିପାଇଁ ମଧ୍ୟ ନିରବଚ୍ଛିନ୍ନ ଶାରୀରିକ ଶ୍ରମାଭ୍ୟାସ ଦରକାର । ଆମେ ଜାତି ଭାବରେ ଆଜି କଠିନ ମାନସିକ

ବା ଶାରୀରିକ କୌଣସି ପ୍ରକାର କଠିନ ଶ୍ରମରେ ବିଶ୍ୱାସ କରୁନାହୁଁ । ଶସ୍ତା ପାଶ୍ ଓ ସାର୍ଟିଫିକେଟ୍ ସଂଗ୍ରହହିଁ ଆଜ ଭାରତୀୟ ନିକଟରେ 'ଏଡୁକେଶନ' । ଏ ଆତ୍ମ-ପ୍ରତାରଣା କେତେଦିନ ଆମେ ଚାଲୁ ରଖି ପାରିବା ? ସରକାର ବା ଦେଶବାସୀ, ଶିକ୍ଷାକୁ ଏ ପ୍ରକାର କଦର୍ଥ ଓ ଦୁରବସ୍ଥାରୁ ରକ୍ଷା କରନ୍ତୁ, ନଚେତ୍, ନିଜେ ଧୂଳିସାତ୍ ହେବେ ଅଚିରେ । ପ୍ରାଇମେରୀ ସ୍ତରରୁ ଆମକୁ ଆରମ୍ଭ କରିବାକୁ ହେବ ପ୍ରକୃତ ମାନସିକ-ଓ-ଦୈହିକ-ଶ୍ରମ-ଭିତ୍ତିକ ଶିକ୍ଷା । ଆମର ପରୀକ୍ଷା ବ୍ୟବସ୍ଥାକୁ ସେହି ଲକ୍ଷ୍ୟରେ ଦୃଢ଼ତାର ସହିତ ପୁନର୍ଗଠିତ କରିବାକୁ ହେବ । ମାନସିକ ସ୍ତରରେ ପିଲେ ଆନ୍ତର୍ଜାତିକ ମାନଦଣ୍ଡ ଅନୁସାରେ ଶତକଡ଼ା ୫୧ ରଖି ଏବଂ ଦୈହିକ ସ୍ତରରେ, ସେହି ମାନଦଣ୍ଡରେ, କୌଣସି ନା କୌଣସି ଶାରୀରିକ ପରୀକ୍ଷାର ସମ୍ମୁଖୀନ ହେବାପାଇଁ ପ୍ରସ୍ତୁତ ରହିବେ । କେବଳ ଏହିପରି ଭାବରେ, କଠିନ ଓ ବୁଦ୍ଧିଯୁକ୍ତ ପରିଶ୍ରମ ଉପରେହିଁ, ଆମେ ଏକ ନୂତନ ଶକ୍ତିଶାଳୀ ଜାତି ଠିଆ କରେଇ ପାରିବା । ଏକ ସ୍ୱାଧୀନ ଜାତି ପକ୍ଷରେ ଶସ୍ତା-ପାଶ୍-ବିତରଣ ଅର୍ଥହୀନ, ଅଯଥାର୍ଥ ଓ ଅଯୌକ୍ତିକ । ତାହା ଶିକ୍ଷା ନୁହେଁ, ତାହା ଶିକ୍ଷାର କଳା-ବଜାର । ଆଜି ସମଗ୍ର ଭାରତର ଶିକ୍ଷା ବ୍ୟବସ୍ଥା ଏକ ବୌଦ୍ଧିକ ଓ ନୈତିକ କଳାବଜାର ଛଡ଼ା ଆଉକିଛି ନୁହେଁ ।

## ଏକାତ୍ମ ଭାବ

କୋଠାରୀ କମିସନ୍ ଶିକ୍ଷାର ସବୁ ସ୍ତର ଭିତରେ ଏକାତ୍ମ ଭାବ ଜାଗ୍ରତ କରି ରଖିବା ପାଇଁ ମଧ୍ୟ ଖୁବ୍ ଜୋରରେ କହିଛନ୍ତି । ଅର୍ଥାତ୍, ଗୋଟିଏ କଲେଜ, ତା ଆଖ'ପାଖ ହାଇସ୍କୁଲଗୁଡ଼ିକୁ ନଜର କରିନେବ ଏବଂ ପ୍ରତିଟି ହାଇସ୍କୁଲ ପାଖ ପାଖ ପ୍ରାଇମେରୀ ସ୍କୁଲଗୁଡ଼ିକୁ ନଜର କରିନେବେ । ସମସ୍ତେ ମନେ କରିବେ ଯେ, ମାନ ସମସ୍ତେ ଏକଜାଗ ଗୋଟିଏ କାମ କରୁଛନ୍ତି ।

ଏହା ମଧ୍ୟ ହେବା ଏକାନ୍ତ ଉଚିତ । ଲେଖକ, ମେହେର କଲେଜରେ ଥିଲାବେଳେ ନିଜ ପ୍ରେରଣାରେହିଁ ପାଖ ଆଖର ପଚିଶଟି ହାଇସ୍କୁଲ ହେଡ଼ମାଷ୍ଟରମାନଙ୍କୁ ଏହି ଆଦର୍ଶରେ ଏକ ପତ୍ର ଲେଖିଥିଲି । କିନ୍ତୁ

କେବଳ ଜଣେ ହେଡ଼ମାଷ୍ଟର ସେ ପତ୍ର ପ୍ରତି ସହାନୁଭୂତି ସୂଚକ ପତ୍ର ଦେଇଥିଲେ । ଆଜି ସର୍କାରଙ୍କ ନିର୍ଦ୍ଦେଶରେ ଏ ସବୁକୁ ଆପେକ୍ଷିକ ଭାବରେ ଠିଆ କରେଇବାକୁ ହେବ ।

## ପ୍ରାଇମେରୀ ଓ ସେକେଣ୍ଡାରୀ ପାଇଁ ଗୋଟିଏ ବୋର୍ଡ଼

ଏବଂ ସେହି ଆଦର୍ଶକୁ ଆଗରେ ରଖି ଏହି ଲେଖକ ଦୃଢ଼ତା ଏହା ମଧ୍ୟ କହିପାରେ ଯେ, ପ୍ରାଇମେରୀ ଓ ସେକେଣ୍ଡାରୀ ଶିକ୍ଷା ଏପରି ପରସ୍ପରାପେକ୍ଷୀ ଯେ ସେଥିପାଇଁ ଦୁଇଟି ବୋର୍ଡ଼ ରଖିବାର କୌଣସି ଅନିବାର୍ଯ୍ୟ ଆବଶ୍ୟକତା ମଧ୍ୟ ଦେଖାଯାଉନି । ପ୍ରାଇମେରୀ ଓ ସେକେଣ୍ଡାରୀ ଶିକ୍ଷାକୁ ଗୋଟିଏ ଏକକ ଧରି ଗୋଟିଏ ସଂସ୍ଥା ଅଧୀନରେ ଏବଂ କଲେଜ ଗୁଡ଼ିକ ବିଶ୍ୱବିଦ୍ୟାଳୟ ଅଧୀନରେ ରଖିଲେ, ସମଗ୍ର ଶିକ୍ଷା-ବ୍ୟବସ୍ଥା ବରଂ ସରଳୀକୃତ ହୋଇ ଉଠନ୍ତା । ଗୋଟିଏ ବୋର୍ଡ଼ହିଁ ଦାୟିତ୍ୱ ନିଅନ୍ତା ଆମ ପିଲାଙ୍କୁ, ପ୍ରି-ପ୍ରାଇମେରୀରୁ ମାଟ୍ରିକ୍ୟୁଲେସନ୍ ପର୍ଯ୍ୟନ୍ତ ଏମିତି ଗଢ଼ି ଆଣି, ଶେଷରେ ବିଶ୍ୱବିଦ୍ୟାଳୟ ହାତରେ ସେମାନଙ୍କୁ ଏପରି ଭାବରେ ଛାଡ଼ି ଦିଆଯାନ୍ତା ଯେ, କୌଣସି ସ୍ତରରେ କାହାର କିଛି ଆପତ୍ତି କରିବାର ନ ଥାନ୍ତା ।

## ସାର୍ଟିଫିକେଟର କଳାବଜାର ଲୋପକର

କିନ୍ତୁ ଏହି ଲେଖକର ଦୃଢ଼ ଧାରଣା ଏହି ଯେ, ଯାହାକୁ ସଂସ୍କାର ନାମରେ ଉପରେ ବା ପୂର୍ବେ କୁହାଗଲା, ଅର୍ଥାତ୍ ଇଂରାଜୀକୁ ଛାଡ଼ି ଓଡ଼ିଆ ମାଧ୍ୟମ କର, ବା ଦରମଲା, ଛତ୍ରଫୁଟା, ଡିଗ୍ରୀ କଲେଜରେ ଅଧିକାଂଶଙ୍କୁ ଜୁନିଅର କଲେଜ କରିଦିଅ ଇତ୍ୟାଦି, ଇତ୍ୟାଦି, ସେ ସବୁ ବାହ୍ୟ ପ୍ରଲେପ ଓ ପ୍ରୟୋଗ ମାତ୍ର । ଆଜି ଭାରତୀୟ ଶିକ୍ଷା ବ୍ୟବସ୍ଥା ଯେଉଁ ଦୁରାରୋଗ୍ୟ ରୋଗରେ ପୀଡ଼ିତ ହୋଇ ବିକଳ-ବିକୃତ ହୋଇ ସାରିଲାଣି ତାର ମୂଳ ଚିକିତ୍ସା ଏ ନୁହେଁ । ତାର ଏକମାତ୍ର ତୁରନ୍ତ ଓ ଅବଶ୍ୟ କରଣୀୟ ଓ ଗଭୀର ଚିକିତ୍ସା ହେଉଛି, ସାର୍ଟିଫିକେଟର ପ୍ରାଧାନ୍ୟ ଲୋପ । ଆମେ ଯଦି ପ୍ରକୃତରେ ଶିକ୍ଷାର ବିପ୍ଳବ ଚାହୁଁ, ପ୍ରକୃତରେ ଯଦି ଦେଶରେ ଜ୍ଞାନ ଚର୍ଚ୍ଚା ଚାହୁଁ, ପ୍ରକୃତରେ ଯଦି ଦେଶରୁ ଭ୍ରଷ୍ଟ-ବିଶୃଙ୍ଖଳା ଯାଉ ବୋଲି ଭାବୁଥାଉ, ତେବେ 'ଇଂରାଜ ହଟାଅ' ପରିବର୍ତ୍ତରେ ଆମର ସ୍ଲୋଗାନ୍ ହେବା ଉଚିତ "ସାର୍ଟିଫିକେଟ ହଟାଅ ।"

ଦୁଃଖର ବିଷୟ କୋଠାରୀ କମିସନ୍ ଆମର ଏହି ମୁଖ୍ୟତମ ସମସ୍ୟା ଉପରେ ସମ୍ପୂର୍ଣ୍ଣ ନୀରବ ।

ଆମେ ଆଜ ସ୍ୱୀକାର କରିବାକୁ ବାଧ୍ୟ ହେବା ଯେ, ଆଜ ମାତ୍ର ଫିକେଟର ନିଜସ୍ୱ ମୂଲ୍ୟ କିଛି ନାହିଁ । କୋଠାରୀ କମିସନ୍ ନିଜେ ଘୋଷଣା କରିଛନ୍ତି ଯେ, ଆମର ତଥା କଥିତ ଏମ. ଏ, ସଭ୍ୟ ଦେଶର ମାଟ୍ରିକୁ୍ୟଲେଟ୍ ସହିତ ସମାନ । ଆମେ ଏହା ନିଧାର୍ଯ୍ୟ ଭାବରେ ଜାଣୁ ଯେ ସ୍ତ୍ରୀରେ ବି.ଏ. ଏମ. ଏ. କେବଳ ନୁହେଁ ପି. ଏଇଚ. ଡ଼. ଡକ୍ଟ୍ ଡିଗ୍ରୀ ଯୋଗାଡ଼ କରି ମଧ୍ୟ ଏ ଦେଶରେ ଗଣ୍ଡା ଗଣ୍ଡା ମୂର୍ଖ, ପଣ୍ଡିତ ବୋଲେଇ ଦାଣ୍ଡରେ ବୁଲିଲେଣି । ସମଗ୍ର ଜାତିର ନୈତିକ ମେରୁଦଣ୍ଡ ଯେ ଆଜ ଚୋପାକଡ଼ା ହୋଇ ପଡ଼ିଛି, ତାର ଆରମ୍ଭ, ପାଠକେ, ନିଶ୍ଚିତ ଭାବରେ, ଏହି ହତଭାଗ୍ୟ ଦେଶର ଶିକ୍ଷା ବିଭାଗରେ, ଯେଉଁଠିକି ସୁସ୍ଥ-ସୁନ୍ଦର-ନୀତି ସମ୍ପନ୍ନ, କଳଙ୍କ ଜାତି ବାହାରିବାର କଥା । ଏବଂ ଏହି ଅନୈତିକତା, ଶଠତା ଓ ପ୍ରତାରଣା ପରିବ୍ୟାପ୍ତ ହୋଇ ପଡ଼ିଛି ଆମ ଶିକ୍ଷା ବିଭାଗରେ, କେବଳ ଆମେ ସତ୍ୟ ଜ୍ଞାନ ପରିବର୍ତ୍ତରେ, ସାର୍ଟ ଫିକେଟକୁହିଁ ମୁଖ୍ୟ ମାନଦଣ୍ଡ ବୋଲି ଧରି ନେବାରୁ । ଏପରି କରିବାର କୌଣସି ହେଲେ ଯୁକ୍ତି ବା ଯଥାର୍ଥତା ବା ଉପଯୋଗିତା ମଧ୍ୟ ନାହିଁ । ଆଜ ଦେଶମଯ୍ୟ ଅବ୍ୟବସ୍ଥା, ବିଶୃଙ୍ଖଳା ଓ ଅନିପୁଣତା ଦେଖା ଦେଇଛି, କେବଳ ଆମର ଅନ୍ଧ ଭାବରେ ସାର୍ଟିଫିକେଟକୁ ଜ୍ଞାନର ଓ ଦକ୍ଷତାର ମାନଦଣ୍ଡ ବୋଲି ଗ୍ରହଣ କରି ନେବାରେ । ଆମ ଦେଶର ସରକାର ସବୁ ସ୍ତରରେ, ସବୁ ଶୃଙ୍କଳରେ କେବଳ ସାର୍ଟିଫିକେଟ ଦେଖି ସନ୍ତୁଷ୍ଟ ହେବାରୁ, ଦେଶରେ ପରିବ୍ୟାପ୍ତ ହୋଇ ଉଠିଛି କେବଳ ଯେନ-ତେନ-ଉପାୟେଣ ସାର୍ଟିଫିକେଟ ଯୋଗାଡ଼ । ପରୀକ୍ଷାରେ ଅସଦ୍‌ଉପାୟ ଅବଲମ୍ବନ ଆଜ ତେଣୁ ଆଜ ଏ ଦେଶରେ ଅନ୍ୟାୟ ହୋଇନାହିଁ । ପରୀକ୍ଷକଙ୍କୁ ମାଛ, ସନ୍ଥୁଗୁଡ଼ିଲ ଓ ଗବ୍ୟଘୃତ ଦେଇ ପି. ଏଇଚ. ଡ଼ ଡିଗ୍ରୀ ମଧ୍ୟ ଆଦାୟ କରିବାର କାହାଣୀ, ଅନ୍ତତଃ ଏହି ଓଡ଼ିଶା ଦେଶରେ ସର୍ବଜନ କଥିତ ।

ଆଜ ଆମର ସ୍ୱାଧୀନ ଦେଶରେ ଆମେ ଗୃହୁ କଣ ? ସରକାର, ଜାତିଠାରୁ କ'ଣ ଆଶା କରନ୍ତି, ତାହା ସ୍ପଷ୍ଟ ବାଣୀରେ ଘୋଷଣା କରି ରଖନ୍ତୁ । ସରକାରଙ୍କର ସେହି ପରମ ଜାତୀୟ ଲକ୍ଷ୍ୟ ଓ ଆଦର୍ଶ

ସମସ୍ତେ ଜାଣିଲେ, ସମଗ୍ର ଶିକ୍ଷା ବ୍ୟବସ୍ଥା ମଧ୍ଯ ଆପେ ଆପେ ସେହି ଲକ୍ଷ୍ୟ ଓ ଆଦର୍ଶରେ ପରିଚାଳିତ ହେବ । ବର୍ତ୍ତମାନ ସାର୍ଟିଫିକେଟ ଆଦର୍ଶ ହେବାରୁ, ଚୋରିଆଡ଼େ ଅନ୍ୟାୟ ଉପାୟରେ ମଧ୍ୟ ସାର୍ଟିଫିକେଟ ସଂଗ୍ରହ ଚାଲିଛି,—ଶିକ୍ଷା ଓ ଉଚ୍ଚ ଶିକ୍ଷାର ଘୋର ପ୍ରତାରଣାମୟ ପତାକା ଠିଆ କରି ।

ସରକାର, ତୁରନ୍ତ ଏହି ଆତ୍ମଘାତୀ ଓ ଘୋର ଅହିତକର ପ୍ରତାରଣା ବନ୍ଦ କରିବା ଉଚିତ ।

ସରକାର ସଙ୍ଗେ ସଙ୍ଗେ ଘୋଷଣା କରିବା ଉଚିତ, ଆମର ଲକ୍ଷ୍ୟ ସାର୍ଟିଫିକେଟ ନୁହେଁ, ଆମର ଏକମାତ୍ର ଲକ୍ଷ୍ୟ 'ଦକ୍ଷତା',—ସର୍ବତ୍ର ଓ ସବୁ କ୍ଷେତ୍ରରେ । କାମ ସହିତ ଡିଗ୍ରୀମାର ଅଙ୍ଗାଙ୍ଗୀ ସମ୍ପର୍କ ନ ଥିବାର ସରକାର ଦେଖାଇବା ଆରମ୍ଭ କରି ଦେଲେହିଁ, ଏ ଦେଶରେ ଶିକ୍ଷାର ପ୍ରକାର ଓ ପ୍ରକୃତି ଆପେ ଆପେ ବଦଳି ଯାନ୍ତା । ଉଦାହରଣ ସ୍ୱରୂପ, ସରକାର ଚାହାନ୍ତି ଗୋଟିଏ ଘର ତୋଳିବାକୁ । ସେଠି ସାର୍ଟିଫିକେଟ ଦରକାର, ନାଁ ସେହି ବିଶେଷ କର୍ମରେ ଦକ୍ଷତା ବେଶୀ ଲୋଡ଼ା ? ଯଦି ଗୋଟିଏ ନିରକ୍ଷର ମିସ୍ତ୍ରୀର ସେ ଦକ୍ଷତା ଥିବ, ତେବେ ସରକାର ମୋଟା ଦରମାର ସାର୍ଟିଫିକେଟକୁ ଆଣି, ଦରିଦ୍ର ସ୍ତରର କଷ୍ଟରେ-ସଂଗୃହୀତ ଅର୍ଥ ଅପବ୍ୟୟ ନ କରି, ସେହି ମିସ୍ତ୍ରୀକି ବରଂ ସେ ଦାୟିତ୍ୱ ଦେବାର ଆଦର୍ଶ ଶୀଘ୍ର ଦେଖାନ୍ତୁ । ବିଶ୍ୱ-ବିସ୍ମୟ-କାରୀ ଲିଙ୍ଗରାଜ ଓ କୋଣାର୍କ ଯେଉଁ ନିରକ୍ଷର ଓଡ଼ିଆ ମହାରଣାଏ ଠିଆ କରାଇଥିଲେ, ତାଙ୍କର କି ଡିଗ୍ରୀ ଥିଲା ? ସରକାର ସେ କଥା ଆଦୌ ଭୁଲିଯିବା ଉଚିତ ନୁହେଁ । ଜଣେ ଡିଗ୍ରୀ-ହୀନ ସୁଦକ୍ଷ ପାଲା-ବାଲା ଯେପରି ଭାବରେ ପ୍ରାଚୀନ ଓଡ଼ିଆ ସାହିତ୍ୟ ବୁଝେଇ ପାରିବ, ପଣ ପଣ ବାହାରୁଥିବା ଓଡ଼ିଆ ଏମ୍. ଏ. ତା ପାରିବେ ନି । ତେବେ, ଜାଣି ଜାଣି ଆମେ ଏ ସାର୍ଟିଫିକେଟର ହେମମାୟା-ହରିଣୀ ପଛରେ କାହିଁକି ଧାଇଁଛେ ? ଓଡ଼ିଶାରେ ଜଣେ ସୁଦକ୍ଷ ଗଭର୍ଣ୍ଣର ସାମାନ୍ୟ ମାଟ୍ରିକ୍ୟୁଲେଟ୍ ଥିଲେ ବୋଲି କୁହାଯାଏ । କିନ୍ତୁ ସେ ନିଜ ଦକ୍ଷତା ବଳରେ କିରାନୀ-ଷ୍ଟେନୋଗ୍ରାଫର ସ୍ତରରୁ ଏପରି ଉଚ୍ଚସ୍ତରକୁ ଉଠି ପାରିଥିଲେ ।

ସରକାର, ତାଙ୍କର ଶିକ୍ଷକ, ଅପର ଉଦ୍ଭଜନ କର୍ମୀ, କନଷ୍ଟେବଲ୍‌ଠୁ ଆରମ୍ଭ କରି ଯାହା ଯେଉଁଠି ଦରକାର, କୌଣସିଠାରେ ଅମୁକ ସାର୍ଟିଫିକେଟ୍ ଦେଖାଇବା ଦରକାର ବୋଲି କହିବାର ପ୍ରାଚୀନ ଅଭ୍ୟାସ ତୁରନ୍ତ ପରିତ୍ୟାଗ କରନ୍ତୁ, ଦେଖିବେ ରାତାରାତି ଶିକ୍ଷା ସଂସାରରେ ବିପ୍ଳବ ଆପେ ଆପେ ଦେଖା ଦେବ। ଅନୈତିକ ଅଭ୍ୟାସ ସବୁ ଆପେ ଆପେ ଛୁଟିଯିବ। ସବୁଠି କେବଳ ଦକ୍ଷତାହିଁ ମାନଦଣ୍ଡ ବୋଲି ଜାଣିଲେ, ପିଲେ ମନ ପ୍ରାଣ ଦେଇ ପଢ଼ନ୍ତେ,—ଷ୍ଟ୍ରାଇକ୍ କରି ରାସ୍ତାରେ ସ୍ଲୋଗାନ୍ ଗାଇ ବୁଲନ୍ତେ ନା।

ଅଜି ଆମର ବାଷ୍ଟ୍ରୀୟ ଅବସ୍ଥା ସମ୍ପୂର୍ଣ୍ଣ ବଦଳିଛି। ଆଜି କୌଣସି ଡିଗ୍ରି ନ ଥିବା ଲୋକଟିଏ ପ୍ରତିନିଧି ଭାବରେ, ଦେଶର ଶିକ୍ଷାମନ୍ତ୍ରୀ ହୋଇ ପାରନ୍ତି। ତାହାହିଁ ଗଣତନ୍ତ୍ର। ଏ ପରିପ୍ରେକ୍ଷିତରେ,ଦେଶର ଶିକ୍ଷା-ବିଭାଗର ମୁଖ୍ୟକର୍ତ୍ତାଙ୍କର ଯେତେବେଳେ କୌଣସି ଡିଗ୍ରୀ ଆମେ ଲୋଡ଼ୁ ନା, ତେବେ ସବୁଠି କେବଳ 'ସାର୍ଟିଫିକେଟ୍' ଉପରେ ନଜର ରଖି, ଆମେ ଆମର ସମଗ୍ର ଜାତୀୟ ଜୀବନକୁ ବୃଥା କାହିଁକି ଏପରି ବିକଳ, ବିକୃତ ଓ କଳୁଷିତ କରି ଚାଲିଛେ ? ସରକାର ତୁରନ୍ତ ସେଥିପ୍ରତି ଦୃଷ୍ଟି ଦିଅନ୍ତୁ।

( ୪ )

## ନିମ୍ନ ମାନଦଣ୍ଡ ଓ ଛାତ୍ର ବିଶୃଙ୍ଖଳା

ସ୍ୱାଧୀନତୋତ୍ତର ଭାରତବର୍ଷର ସ୍କୁଲ୍-କଲେଜମାନଙ୍କ ଆଡ଼କୁ ଅନେଇଲେ ଦୁଇଟା ଘଟଣା ସାଙ୍ଗେ ସାଙ୍ଗେ ପ୍ରତ୍ୟେକ ଚିନ୍ତାଶୀଳ ବ୍ୟକ୍ତିର ଦୃଷ୍ଟି ଆକର୍ଷଣ କରିବ। ସେ ଦୁଇଟି ହେଲା,

୧। ବିଦ୍ୟାର ମାନଦଣ୍ଡର ଅଧୋଗମନ।

୨। ଛାତ୍ର ବିଶୃଙ୍ଖଳା।

ଏ ଦେଶର ନେତୃବୃନ୍ଦ ଓ ଶିକ୍ଷାବିତ୍ ସମ୍ପ୍ରଦାୟ ଓ ଚିନ୍ତାଶୀଳ ଲୋକେ, ଏ ଦୁଇଟି ଯାକ ଜାତୀୟ-ବିପଦ ଉପରେ ପୃଥକ୍, ପୃଥକ୍ ଭାବରେହିଁ ବିଚାର କରିଥାନ୍ତି। କିନ୍ତୁ କେହି ବ୍ୟକ୍ତି ବା କମିଟି ବା କମିସନ୍ ଏ ଦୁଇଟି ବିଷୟ ଯେ ଅଙ୍ଗାଙ୍ଗୀ ଭାବରେ ଜଡ଼ିତ, ସେତକ ସତ୍‌ସାହସର ସହିତ କହିବାକୁ ନାରାଜ।

ଏହି ଲେଖକ ବରାବର କହି ଆସିଛି ଯେ, ଆମେ ସ୍କୁଲ୍-କଲେଜରେ ପାଶ୍‌ର ମାନଦଣ୍ଡ ଯଦି ଆନ୍ତର୍ଜାତୀୟ ମାନଦଣ୍ଡ ସହିତ ଉଠାଇ ନାଅନ୍ତେ ଏବଂ ଆମର ପରୀକ୍ଷା ଯଦି କେତେକ ଖଣ୍ଡ ପାଠ୍ୟପୁସ୍ତକ ଉପରେ ନ ହୋଇ, ସିଲାବସ୍ ଉପରେ ହୁଅନ୍ତା, ତେବେ ଆମ ପିଲେ, ସାରାବର୍ଷ ଏପରି ଖାଟିବାକୁ ବାଧ୍ୟ ହୁଅନ୍ତେ ଯେ, ରାସ୍ତାରେ ସ୍ଲୋଗାନ୍ ଗାଇ ବୁଲିବାର କଳ୍ପନା ହିଁ ସେମାନଙ୍କ ମନକୁ ଆସନ୍ତା ନାହିଁ ।

ଅନେକ ଗୌଣ ବିଷୟ ଉପରେ ବଡ଼ ବଡ଼ କଥା ପୂର୍ଣ୍ଣ ବାକ୍ୟାବଳୀରେ ବଖାଣି ଥିଲେ ମଧ୍ୟ, କମିଟି କମିସନ୍ ସବୁ, ଆମ ସ୍କୁଲ୍-କଲେଜରେ ଜ୍ଞାନ ଓ ପାଶର ମାନ-ଦଣ୍ଡ କିପରି ଉପରକୁ ଉଠିବ, ତା ଉପରେ କୌଣସି ହେଲେ ସ୍ପଷ୍ଟ ନିର୍ଦ୍ଦେଶ ନ ଦେଇ, କେବଳ ଇଂରାଜୀ ଭାଷାରେ ବାକ୍‌ଚାତୁରୀର ଆଶ୍ରୟ ନେଇଛନ୍ତି କହିବାକୁ ହେବ । ଉଦାହରଣ ସ୍ୱରୂପ, କୋଠାରୀ କମିସନ୍ ଆମ ପରୀକ୍ଷା-ପଦ୍ଧତିର ଉନ୍ନୟନ ପାଇଁ କ'ଣ ଓ କିପରି କହିଛନ୍ତି, ପାଠକେ ଦେଖନ୍ତୁ—

“ପରୀକ୍ଷାକୁ ନୂତନ ଦୃଷ୍ଟି କୋଣରୁ ଦେଖିବାକୁ ହେବ । ଲିଖିତ-ପରୀକ୍ଷାକୁ ଏପରି ଉନ୍ନୀତ କରିବାକୁ ହେବ, ଯେପରିକି ତାହା ପରୀକ୍ଷାର୍ଥୀର କୃତକାର୍ଯ୍ୟତାକୁ ଯଥାର୍ଥ ବାସ୍ତବତା ସହିତ ଆମ ଆଗରେ ଗ୍ରହଣୀୟ ବୋଲି ପ୍ରମାଣିତ କରିବ । ପୁଣି ପରୀକ୍ଷାର୍ଥୀର ବ୍ୟକ୍ତିତ୍ୱର ଅନ୍ୟ ଅଂଶ ସବୁ ଯାହା ଲିଖିତ ପରୀକ୍ଷା ଦେଇ ପରୀକ୍ଷିତ ହୋଇ ନ ପାରେ, ସେ ସବୁ କିପରି ପରିମାପିତ ହୋଇ ପାରିବ, ସେଥିପାଇଁ ମଧ୍ୟ ଉପାୟ ଆବିଷ୍କାର କରିବାକୁ ହେବ ।

ପ୍ରାଇମେରୀ ସ୍ତରରେ ପରୀକ୍ଷା, ପିଲାଙ୍କ ମୌଳିକ ଦକ୍ଷତା ସବୁକୁ ମାପିବାରେ ଏବଂ ସେମାନଙ୍କର ଉତ୍ତମ ଅଭ୍ୟାସ ସବୁ ଓ ଉତ୍ତମ ଦୃଷ୍ଟିକୋଣ ଗଢ଼ିବାରେ ସାହାଯ୍ୟ କରିବା ଉଚିତ ।’ ଇତ୍ୟାଦି ଇତ୍ୟାଦି ।

ଏହି ପ୍ରକାର ଉଦାର ମହନୀୟ ଆଦର୍ଶ ଶୁଣାଇ ଦେଇ କୋଠାରୀ କମିସନ୍ ଆଉ କୌଣସି ପ୍ରକାର ଅପ୍ରୀତିକର ଜଞ୍ଜାଳ ଭିତରେ ପଶିବାର ଆବଶ୍ୟକତା ବୋଧ କରି ନାହାନ୍ତି । କିନ୍ତୁ ପାଠକେ ଦେଖନ୍ତୁ, ଏହି ପ୍ରକାର ଅସ୍ପଷ୍ଟ ଓ ଅନିର୍ଦ୍ଦିଷ୍ଟ ଉପଦେଶାତ୍ମକ ବାକ୍ୟାବଳୀ ଦ୍ୱାରା ଆମ ଶିକ୍ଷା-ବ୍ୟବସ୍ଥାର ସାମାନ୍ୟତମ ଉନ୍ନତି ଘଟିବ କି ?

ଏହି ଦୁଏଟି ହେଉଛି ହେତୁ, ଯାହା ଯୋଗୁ ଆମେ ଲକ୍ଷ ଲକ୍ଷ ଟଙ୍କା ବ୍ୟୟ କରି କମିଟି-କମିସନ୍ ବସେଇ ଚାଲିଛୁ, କିନ୍ତୁ ଏତେଣେ ଆମ ଶିକ୍ଷାର ଅଧୋଗମନ ଅବାଧରେ ଚାଲିଛି ଏବଂ ଛାତ୍ର ବିଶୃଙ୍ଖଳା ମଧ୍ୟ ବଢ଼ି ଚାଲିଛି । ଯେ ପର୍ଯ୍ୟନ୍ତ ଆମେ ଆମ ନିଜର ଦୋଷ-ଦୁର୍ବଳତା ଉପରେ ସ୍ପଷ୍ଟ କଥା କହିବାର ସତ୍‌ସାହସ ଦେଖାଇ ନାହୁଁ, ଆମର ଉନ୍ନତି ହେବ କେଉଁଠିବାଟେ ?

ଏହା ଜଣା କଥା ଯେ, ୧୦୦ ମାର୍କରୁ ୩୦ ମାର୍କ ରଖିଲେ ପାଶ୍, ଏହା ଏକାନ୍ତ ହାସ୍ୟକର, ଅଯୌକ୍ତିକ, ଅଯଥାର୍ଥ ଏବଂ ସମ୍ପୂର୍ଣ୍ଣ ନନ୍‌ସେନ୍‌ସ୍ ସରବ ପଚରି କରି ଜାଣୁଛୁ ଯେ ଅଗ୍ରଗାମୀ ଦେଶମାନଙ୍କରେ ୧୦୦ରୁ ୫୧ ହିଁ ହେଉଛି ସାଧାରଣ ପାଶ୍ ଓ ୭୫ରୁ ଉପରକୁ ହିଁ ପ୍ରଥମ ଶ୍ରେଣୀ । ଭାରତରେ ୧୦୦ ରୁ ୩୦ ରେ ପାଶ୍, ସେଥିରେ ପୁଣି ଗ୍ରେସ୍‌ମାର୍କ୍ ଓ ଅବାଧ କପି, ଅଥଚ ୧୦୦ ରୁ ୮୦ ନେଲେ, କେବଳ ତୃତୀୟ ଶ୍ରେଣୀରେ । ଏହି ବ୍ୟାଧିଗ୍ରସ୍ତ ଅବସ୍ଥା, ଆମେ ଦେଖି ମଧ୍ୟ ଦେଖୁନୁ ବୋଲି ଭାବୁଛୁ, ଅଥଚ ଶିକ୍ଷା-ସଂସ୍କାର ପାଇଁ କମିସନ୍ ଉପରେ କମିସନ୍ ବସେଇ ଚାଲିଛୁ । ଏ ଆତ୍ମ-ପ୍ରତାରଣା ଯେତେଦିନ ଚାଲିଥିବ, ସେତେଦିନ ପର୍ଯ୍ୟନ୍ତ ଏ ଜାତିର କି ଉନ୍ନତି କେଉଁ ଦିଗରେ ସମ୍ଭବ ହେବ ? ଯାହା ହେଉ, କୋଠାରୀ-କମିସନ୍, ଆମ କଲେଜ ସବୁ ଯେ, ସଭ୍ୟ ଦେଶମାନଙ୍କର ହାଇସ୍କୁଲ୍ ସହିତ ଓ ଆମ ହାଇସ୍କୁଲ୍, ସେ ସେ ଦେଶମାନଙ୍କର ପ୍ରାଇମେରୀ ସହିତହିଁ ଯେ ତୁଳିତ ହେବାକୁ ବସିଲଣି. ଏତିକ ଯେ ସ୍ପଷ୍ଟ ଘୋଷଣା କରିଛନ୍ତି, ସେତିକି ହେଲେ ନିମ୍ନ-ମାନଦଣ୍ଡ-ପ୍ରତିଷ୍ଠିତ ଶସ୍ତା-ସାର୍ଟିଫିକେଟ୍-ସଂଗ୍ରହ ଯେ ଶିକ୍ଷା ନୁହେଁ, ଏହାହିଁ ଏ ଦେଶରେ ଚେତନାକୁ ଜାଗ୍ରତ କରୁ । ଏବେ ଅନେକ ବ୍ରିଟିଶ୍ ଓ ଆମେରିକାନ ବିଶ୍ୱବିଦ୍ୟାଳୟ ଇଣ୍ଡିୟାନ୍ ଗ୍ରାଜୁଏଟ୍ ବା ଏମ୍. ଏ. ମାନଙ୍କର ଇଂରାଜୀ ଓ ଅନ୍ୟାନ୍ୟ ଜ୍ଞାନ ଏତେ ତଳକୁ ଲେଣି ଯେ, ସେମାନଙ୍କୁ ଗ୍ରହଣ ନ କରି ଫେରାଇ ଦେବାର ମଧ୍ୟ ସମ୍ବାଦପତ୍ର ମାନଙ୍କରେ ବାହାରିଲଣି ।

ତା ହେଲେ ମଧ୍ୟ ଏ ଦେଶରେ ଚେତନାକୁ ଦୋହଲଉ ।

ସ୍ୱାଧୀନ ଭାରତର ସମସ୍ୟା ନୁହେଁ ବା ଆବଶ୍ୟକତା ନୁହେଁ ସହସ୍ର ସହସ୍ର ଋଗ୍ଣ, ଅର୍ଦ୍ଧଦଗ୍ଧ, ଅନଭ୍ୟସ୍ତ, ଶ୍ରମକାତର, କେଉଁ-କଥାକୁ

ଯୋଗ୍ୟ-ନ ଥିବା ମାଟ୍ରିକୁ୍ୟଲେଟ୍ ବା ବି.ଏ., ବା ଏମ୍. ଏ. ବା ଏପରିକି ପି. ଏଇଚ୍. ଡି. ବା ଡକ୍ଟର୍ ସବୁକୁ ଲେବୁଲ ମାରି ଦାଣ୍ଡକୁ ବାହାର କରିଦେବ। ।

ଶିକ୍ଷା, ଲେବୁଲ୍ ନୁହେଁ ବା ସଂଖ୍ୟା ନୁହେଁ । ଏ ଦେଶର ଶିକ୍ଷାବିତ୍ ଓ ଶାସକମାନେ ଏହା ସ୍ପଷ୍ଟ ଧାରଣା କରି ଦୃଢ଼ ହସ୍ତରେ ସାର୍ଟିଫିକେଟ୍-ସର୍ବସ୍ୱତାକୁ ହଟାଇ ସଂସ୍କାର ଆରମ୍ଭ କରନ୍ତୁ, ନଚେତ୍ ଏହି କିଛି-ନ-ଜାଣିଥିବା, ଅପାରଗ, ଲେବୁଲ-ସର୍ବସ୍ୱ ବାହିନୀ, କେବଳ ଲେବୁଲ୍ ଦେଖାଇ, ଅଚିରେ ଏ ଦେଶର ସମଗ୍ର ଶାସନ ବ୍ୟବସ୍ଥା ଓ ସାମାଜିକ ସ୍ୱାସ୍ଥ୍ୟକୁ ସମୂଳେ ଧ୍ୱଂସ କରିବେ ।

## ଦଶକୋଟି ନିର୍ଦ୍ଦେଶ

ଏ ଦିଗରେ ଦୃଢ଼ ପଦକ୍ଷେପ ସ୍ୱରୂପରେ କ'ଣ କରିବାକୁ ହେବ, ନିମ୍ନରେ ତା'ର କେତୋଟି ସୂଚନା ମାତ୍ର ଦେଉଛୁ—

୧ । ଆମର ପରୀକ୍ଷା ମାନଙ୍କର ମୂଲ୍ୟାୟନ ଧାରାକୁ ଆନ୍ତର୍ଜାତିକ ସ୍ତରକୁ ଉନ୍ନୀତ କରିବାକୁ ହେବ,—ପ୍ରାଇମେରୀରୁ, ଏମ୍. ଏ. ପର୍ଯ୍ୟନ୍ତ । ଯଦି ଶତକଡ଼ା ୫୧ ହିଁ ଥିବ ପାଶର ଆନ୍ତର୍ଜାତିକ ମାପକାଠି, ଆମକୁ ତାହାହିଁ ଗ୍ରହଣ କରିନେବାକୁ ହେବ, ଆଖି ବୁଜି ।

ଆମ ପରୀକ୍ଷାକୁ କେବଳ ଆନ୍ତର୍ଜାତୀୟ ମାନଦଣ୍ଡକୁ ଉଠେଇବାକୁ ହେବ ନାହିଁ, ପରୀକ୍ଷାର ପ୍ରକାର ମଧ୍ୟ ଆମକୁ ତୁରନ୍ତ ବଦଳାଇବାକୁ ପଡ଼ିବ । କୋଠାରୀ କମିସନଙ୍କର ଏତଦ୍-ସମ୍ପର୍କରେ ନିମ୍ନଲିଖିତ ନିର୍ଦ୍ଦେଶ ଆମକୁ ଦୃଢ଼ଭାବରେ ପାଳନ କରିବାକୁ ହେବ—

"ପରୀକ୍ଷା ଏକ ପ୍ରବହମାନ ଧାରା ହୋଇ ଚାଲିବା ଉଚିତ । ଏହା ବର୍ଷକରେ ବା କେତେ ବର୍ଷରେ ମାତ୍ର କେତେଦିନ ବ୍ୟାପାର ହେବା ଉଚିତ ନୁହେଁ । ଅଧ୍ୟାପନା ଓ ପରୀକ୍ଷା ବରାବର ସମତାଳରେ ଚାଲିବା ଉଚିତ ଏବଂ ଏହି ଦୁଇଟି ଯାକ, ଶିକ୍ଷାର ମୁଖ୍ୟ ଆଦର୍ଶ ଗୁଡ଼ିକୁ ସବୁବେଳେ ଆଖି ରଖିଥିବା ଉଚିତ । ପରୀକ୍ଷା ଓ ଅଧ୍ୟାପନା ଭିତରେ ଏ ପ୍ରକାର ଅଙ୍ଗାଙ୍ଗୀ ସମ୍ପର୍କ ରହି ପାରିଲେ, ତାହା ଛାତ୍ରମାନଙ୍କର ପଠନ— ଅଭ୍ୟାସ ଉପରେ ଏବଂ ଶିକ୍ଷକଙ୍କର ଶିକ୍ଷାଦାନ ପ୍ରଣାଳୀ ଉପରେ ମଧ୍ୟ ଭଲ ପ୍ରଭାବ ଆପେ ଆପେ ପକାଇବ ।"

ଏ ଆଦର୍ଶରେ, ପ୍ରାଇମେରୀଠୁ କଲେଜ ପର୍ଯ୍ୟନ୍ତ, ସବୁ ସ୍ତରରେ, ବାହାର ପରୀକ୍ଷା ଉପରେ ନିର୍ଭର ନ କରି ଆମକୁ ଛାତ୍ରମାନଙ୍କର ଆଭ୍ୟନ୍ତରୀଣ ପରୀକ୍ଷା ଉପରେହିଁ ଅଧିକରୁ ଅଧିକ ନିର୍ଭର କରିବାକୁ ହେବ । ପ୍ରତି ଅନୁଷ୍ଠାନରେ ପ୍ରତି ସପ୍ତାହ ଓ ପ୍ରତି ମାସରେ ପରୀକ୍ଷା ଚାଲିଥିବ । ସେହି ସବୁ ପରୀକ୍ଷାର ସାମଗ୍ରିକ ଫଳହିଁ ପିଲର ଦକ୍ଷତା ବୋଲି ଧରାଯିବ । ପୁଣି ଏହି ଦକ୍ଷତାର ମାପକାଠି ହେବ, ଶତକଡ଼ା ୫୧ ରେ ସାଧାରଣ ପାସ୍ ।

କୋଠାରୀ କମିସନ୍ ମଧ୍ୟ କହିଛନ୍ତି ଯେ, ପିଲର ବ୍ୟକ୍ତିତ୍ୱର ବହୁ ଦିଗକୁ, ଲିଖିତ ପରୀକ୍ଷା ଦ୍ୱାରା ପରୀକ୍ଷିତ ହୋଇ ପାରିବ ନାହିଁ । ପ୍ରତ୍ୟେକ ଅନୁଷ୍ଠାନରୁ ପିଲ ବାହାରିବା ବେଳେ କୌଣସି ସାର୍ଟିଫିକେଟ୍ ଧରି ନୁହେଁ, ସେ ବାହାରିବ କେବଳ ଏକ ରେକର୍ଡ଼ ଧରି, ଯେଉଁଥିରେ ପିଲର ଭିନ୍ନ ଭିନ୍ନ ବିଷୟ ଉପରେ ସାମଗ୍ରିକ ଦକ୍ଷତା ନିର୍ଦ୍ଦେଶିତ ଥିବ ଏବଂ ଥିବ ମଧ୍ୟ ସେହି ଅନୁଷ୍ଠାନର ମୁଖ୍ୟଙ୍କର ପିଲ ସଂପର୍କରେ, ତାର ଚରିତ୍ର, ଗୋଷ୍ଠୀ ସେବା ଭାବ, ଶାରୀରିକ କ୍ଷମତା ଇତ୍ୟାଦି ନେଇ ରିମାର୍କ୍ ।

ଏହି ରେକର୍ଡ଼ହିଁ ଯେ ପିଲର ଭାଗ୍ୟ ପରିଚାଳିତ କରିବ, ଏହା ଜାଣିଲା ପରେ, ଅନୁଷ୍ଠାନ ମାନଙ୍କରେ ଡିସିପ୍ଲିନ୍ ଆପେ ଆପେ ଅନେକ ପରିମାଣରେ ଆସିଯିବନି କି ?

୨ । ପୁଣି, ପରୀକ୍ଷା କେତେକାଂଶ ପାଠ୍ୟପୁସ୍ତକ ଉପରେ ନ ହୋଇ, ହେବ ସିଲାବସର ନିର୍ଦ୍ଦେଶ ଅନୁଯାୟୀ । ମାତ୍ର ଏହି ନୀତିକୁ ଗ୍ରହଣ କରିଦେଲେହିଁ, ଏ ଦେଶରେ ଦେଖା ଦେଇଥିବା ବ୍ୟାପକ ଟୀକା-ପୁସ୍ତକର ଅତ୍ୟାଚାର ଏବଂ ପାଠ କହିଲେ ଏ ଦେଶରେ କେବଳ ଘୋଷା-ବଳ ଦିଆ ରୀତି ବୋଲି ଯାହା ଧରାଯାଏ, ତାହା ସମ୍ପୂର୍ଣ୍ଣ ଉଠିଯାନ୍ତା ଏବଂ ପିଲେ ନିଜେ ନିଜେ ପାଠ ବୁଝି, ନିଜେ ନିଜେ ଚିନ୍ତା କରି ଶିଖନ୍ତେ, ଯାହାହିଁ କି ପ୍ରକୃତ ଶିକ୍ଷା ।

୩ । ପୁଣି, ଆମେ ଯେପରି ଭାବରେ ହଜାର ହଜାର ପିଲଙ୍କୁ ଚାଳିଧକରି କୌଣସି ନିର୍ଦ୍ଦିଷ୍ଟ ଦିନ ଓ ସ୍ଥାନରେ ପରୀକ୍ଷା କରାଉଛୁ, ଏହା ତୁରନ୍ତ ବନ୍ଦ କରି, ପରୀକ୍ଷାକୁ ପରୀକ୍ଷାର୍ଥୀଙ୍କ ପ୍ରସ୍ତୁତି ଉପରେହିଁ ଛାଡ଼ି ଦିଆଯିବା ଉଚିତ । ଧର, ମାଟ୍ରିକୁଲେଶନ ପରୀକ୍ଷା । ଏହା ବର୍ତ୍ତମାନ

ଥରେ ନ ହୋଇ ତନି ଗୁରଥର ହେବ । ଯେଉଁ ପିଲା ଯେତେବେଳେ ନିଜକୁ 'ପ୍ରିପେୟାର୍ଡ଼' ମନେ ମନେ କଲା ସେ ସେତିକିବେଳେହିଁ ସେ ପରୀକ୍ଷା ଦିଅନ୍ତା । ଅବଶ୍ୟ ଗୋଟିଏ ନିମ୍ନ ଅଙ୍କ ରଖିବାକୁ ହେବ । ଅର୍ଥାତ୍ ଜଣେ ପ୍ରାର୍ଥୀ ହୋଇଗଲେ, ପରୀକ୍ଷା ହେବ; ତା ଠୁ କମ୍‌ରେ ନୁହେଁ । ସ୍କୁଲ୍‌ମାନଙ୍କର ଦାୟିତ୍ୱ କେବଳ ହେବ, ପିଲାଙ୍କୁ ଶେଷ କ୍ଳାସର ଶେଷ ପରୀକ୍ଷାରେ ମାଟ୍ରିକ୍ୟୁଲେଶନ୍ ପରୀକ୍ଷା ପାଇଁ ସମର୍ଥ, ଏହାହିଁ କେବଳ ସର୍ଟିଫାଇ କରିବା । ତା ପରେ, ମାଟ୍ରିକ୍ୟୁଲେଶନ୍ ପାଶ୍ ଏକାନ୍ତ ଭାବରେ ପିଲାର ଦାୟିତ୍ୱ ।

ସେହିପରି ମଧ୍ୟ ପିଲାର ଦାୟିତ୍ୱ କଲେଜ ସ୍ତରରେ ହାଇସ୍କୁଲ ଓ କଲେଜରେ, ପଢ଼ାଟା ଗୁଲୁ ରହିଥିବ ଏକ ପ୍ରବହମାନ ସ୍ରୋତପରି । ଧର, ବର୍ଷର ମଝିରେ ଦଶଜଣ ନୂଆ ମାଟ୍ରିକ୍ୟୁଲେଟ୍ ଆସିଗଲେ, ସେମାନେ କଲେଜ କୋର୍ସ ଆରମ୍ଭ କରିବାରେ ଯେପରି କୌଣସି ବାଧା ନ ଥିବ । କୋର୍ସ ପୂର୍ଣ୍ଣ କରିବାର ଦାୟିତ୍ୱ ପିଲାଙ୍କର । କୋର୍ସ ନ ସାରି, ବନ୍ଧ ନ ପଡ଼େଇ, ଆମେ ଏବେ ପିଲାଙ୍କୁ ବାଧ କରୁଛନ୍ତୁ, ଗୋଟାଏ ନିର୍ଦ୍ଦିଷ୍ଟ ବେଳରେ ପରୀକ୍ଷା ନେବା ପାଇଁ । ତାହା ହେବା ଉଚିତ ନୁହେଁ ।

ଏବର ପରୀକ୍ଷା ବ୍ୟବସ୍ଥା ବିଦ୍ୟାର୍ଜ୍ଜନର ମର୍ଯ୍ୟାଦା ବା ସୁକୁମାରତା ସୂଚନା କରିବା ପରିବର୍ତ୍ତରେ କରେ ଗକ୍ଷସୀ ଭାବ, ବା ଆତ୍ମ-ପ୍ରତାରଣାର ଭାବ ପ୍ରକାଶ କରେ । ହଜାର ହଜାର ପିଲା ଏକା ସମୟରେ ପରୀକ୍ଷା ଦେବା ଫଳରେ ଆମର ପରୀକ୍ଷା ଫଳ ଠିକ୍ ସମୟରେ ବାହାରି ପାରୁନି । ତାହା ବେଠିକ୍ ହେବାରୁ, ତେଣେ ପରବର୍ତ୍ତୀ ପଢ଼ା ବେଠିକ୍ ହୋଇ ଉଠୁଛି । ପାଠକେ ଶୁଣି ବିସ୍ମିତ ହେବେ ଯେ, ରେଭେନ୍‌ସା କଲେଜ ଜୁଲାଇ ପ୍ରଥମ ସପ୍ତାହରେ ନୂତନ ସେସନ୍ ଆରମ୍ଭ କଲେ ମଧ୍ୟ, ବି. ଏ. ପଢ଼ା ସେଠି ଆରମ୍ଭ ହେବ କୁଆଡ଼େ ଅଗଷ୍ଟ ଶେଷ ସପ୍ତାହକୁ । ତା' ହେଲେ, ପିଲା ପଢ଼ିବ କ'ଣ ? ସିଲବସ୍ ସରେ କିପରି ? ମାସେ ନ ଯାଉଣୁ ପୂଜାଛୁଟି । ପୂଜା ପରେ ପଢ଼ା ଆରମ୍ଭ କରୁ କରୁ, କ୍ରିଷ୍ଟମାସ । ପ୍ରକୃତ ବିଦ୍ୟାଭ୍ୟାସ କାହିଁ ? କାହାର ଆନ୍ତରିକତା ଅଛି ଏଥିରେ ? ଇଏ ପୁଣି ଏ ରାଜ୍ୟର ଶ୍ରେଷ୍ଠ ବିଦ୍ୟାନୁଷ୍ଠାନ ରେଭେନସାର ଛବି । ଆମେ ପିଲାଙ୍କଠୁ ବାରମାସର

ବରମା ନେଇ । କନ୍ତୁ ପୂର ଗୁରିମାସ ତାଙ୍କୁ ପଢ଼ାଇ କ ନାହିଁ ସନ୍ଦେହ । ଏହା କ ଉଚତ ?

ତେଣୁ ଦୟାକରି ଏ ଦେଶର ଶିକ୍ଷାବତ୍ ଓ ଶାସକ ବର୍ଗ ଲେଖକର ସୂଚନାକୁ ସହାନୁଭୂତିର ସହିତ ବବେଚନା କରିବାକୁ ଅନୁରୋଧ ।

## ଛାତ୍ର ବଶୃଙ୍ଖଳା

ଲେଖକର ଦୃଢ଼ ଧାରଣା ଏହି ଯେ, ଆମେ ଯଦ ପରୀକ୍ଷାର ପାସ୍-ମାର୍କ ଶତକଡ଼ା ୫୧ କୁ ଉଠେଇ ଦଅନ୍ତେ ( ଯାହ କ ଆନ୍ତର୍ଜାତକ ସ୍ତର ), ପରୀକ୍ଷାକୁ କେତେଖଣ୍ଡ ପଢ଼ା ବହି ଉପରେ ଠିଆ ନ କର ଭରନ୍ତେ ସିଲବସ ଉପରେ, ପରୀକ୍ଷା ଦେବା ବା ପାସ୍ କରିବାଟାକୁ ଏକାନ୍ତ ଭାବରେ ପିଲର ଦାୟିତ୍ୱ ବୋଲ ଧର ନଅନ୍ତେ ଏବଂ ସର୍ବୋପର ଆମ ପାଠକୁ ଆଉ ସାର୍ଟିଫିକେଟ୍-ସର୍ବସ୍ୱ କର ନ ରଖନ୍ତେ, ତେବେ ଆମ ବଦ୍ୟାନୁଷ୍ଠାନ ମାନଙ୍କର ଉଭୟ ବାହ୍ୟ ଓ ଆଭ୍ୟନ୍ତରୀଣ ଚେହେର ଯେ ଆପେ ଆପେ ବଦଳ ଯାଆନ୍ତା, ଏଥିରେ ସନ୍ଦେହ ନାହିଁ ।

ଦୁଇ ତନବର୍ଷ ତଳେ ବନାରସ ହନ୍ଦୁ ବଶ୍ୱବଦ୍ୟାଳୟରେ ଭୀଷଣ ଛାତ୍ର ଗଣ୍ଡଗୋଳ ଦେଖା ଦେଲା । ବଶ୍ୱବଦ୍ୟାଳୟ କେତେମାସ ଧର ବନ୍ଦ ହୋଇଗଲ । ପରେ ସମ୍ବାଦ ବାହାରିଲ ଯେ, ଏହି ଗଣ୍ଡଗୋଳରେ ବଶ୍ୱବଦ୍ୟାଳୟର ବଜ୍ଞାନ ବଭାଗ, ଇଂଜନୟରିଂ ବଭାଗ ବା ଡାକ୍ତରୀ ବଭାଗର ଛାତ୍ରମାନେ ନ ଥିଲେ । ଥିଲେ, କଳାଛାତ୍ର ଓ ବଶେଷ କର ଆୟୁର୍ବେଦ କଲେଜର ଛାତ୍ର, ଯେଉଁମାନଙ୍କ ଉଭୟ ପାଠ ଓ ପରୀକ୍ଷା ତଳା ଥିଲ ଏବଂ ସେହି କାରଣରୁ ସେମାନେ ଗଣ୍ଡଗୋଳ କରିବାକୁ ଅବସର ପାଉଥିଲେ ।

## ସହଜ ରାଜନୈତକ ଆୟୁଧ

ଅଧିକନ୍ତୁ, ଏ ଦେଶର ଛାତ୍ରମାନଙ୍କୁ ଆଜ ଆମର ତଥାକଥିତ ନେତାମାନେ ଏକ ସହଜ ରାଜନୈତକ ଆୟୁଧ କର ପାଇଛନ୍ତ ବୋଲ ମନେ ହେଉଛି, ଯାହା କ ଏକ ଘୋର ଜାତୀୟ ବଡ଼ମ୍ବନା ଏବଂ ପରମ ଅହତକର ସାମାଜକ ବ୍ୟଭଚାର । ନେତୃସ୍ଥାନୀୟ କୌଣସି ବ୍ୟକ୍ତ ଉଦ୍ଦେଶ୍ୟରେ ବଦ୍ୟାର୍ଥୀମାନଙ୍କୁ ଟଙ୍କା ଦେଇସା ବା ଅନ୍ୟାନ୍ୟ ପ୍ରଲୋ-

ଭନରେ ସେମାନଙ୍କର ସାରାଜୀବନର ପ୍ରସ୍ତୁତିରୁ ଟାଣି ଆଣି ନିଜ ସ୍ୱାର୍ଥ-ସାଧନ-ରେ ଲଗାଇବା ଘୋର ଜାତିଘୃଣା-ବିରୋଧୀ ଓ ଅମାନବିକ କର୍ମ । ଏହା ଦ୍ୱାରା, ସେମାନେ ଯେ ସମ୍ପୃକ୍ତ ତରୁଣମାନଙ୍କର କି ଅନିଷ୍ଟ ସାଧନ କରୁଛନ୍ତି, ସେହି ପିଲାଏ କେବଳ ପର ଜୀବନରେ ଭୋଗୁଥିବେ ଓ ଜାଣୁଥିବେ ଏବଂ ବ୍ୟକ୍ତିଗତ ଭ୍ରମ-ପ୍ରମାଦ ଛଡ଼ା, ଏହାହିଁ ଯେ ଆଜି-ର ଛାତ୍ର ବିଶୃଙ୍ଖଳାର ଦ୍ୱିତୀୟ ମୂଳ କାରଣ, ଏଥିରେ ସନ୍ଦେହ ମାତ୍ର ନାହିଁ ।

ଶିକ୍ଷାନୁଷ୍ଠାନରେ ଶିକ୍ଷାର୍ଥୀମାନଙ୍କ ସମ୍ପର୍କରେ ଦଣ୍ଡ ବା ପୁରସ୍କାର ଯାହା ହେଉ, ଅନୁଷ୍ଠାନର ଅଧ୍ୟକ୍ଷଙ୍କର ନିଷ୍ପତ୍ତିହିଁ ଶେଷ କଥା ହେବା ଉଚିତ । ଆମେ ଯଦି ଏହି ନୀତିକୁ ଦୃଢ଼ ଭାବରେ ଗ୍ରହଣ ନ କରୁ, ତେବେ ଏ ଜାତି 'ଡିସିପ୍ଲିନ୍' କ'ଣ ତାହା ତ କେବେ ହେଲେ ଶିଖିବନି, ବରଂ ଏହା ଧରି ନେବାକୁ ହେବ ଯେ, ଏ ଦେଶର ଶିକ୍ଷାନୁଷ୍ଠାନ-ଗୁଡ଼ିକ ହିଁ ଏ ଜାତିର ପତନର ମୁଖ୍ୟ କାରଣ ହୋଇ ଉଠିବେ ।

ହେଡ଼ମାଷ୍ଟର ବା ପ୍ରିନ୍‌ସିପାଲ ବା ଭାଇସ୍‌ଚାନ୍‌ସେଲର ଶିକ୍ଷା-ମନ୍ତ୍ରୀଙ୍କ ବାରଣ୍ଡାରେ ଇଣ୍ଟରଭିଉ ପାଇଁ ଧାରଣା ଦେଇ ବସିଥିବେ ଏବଂ ତାଙ୍କର ଆଗରେ ତଥାକଥିତ ଛାତ୍ର-ନେତାଏ, ମନ୍ତ୍ରୀଙ୍କ ଖାସ୍ କାମରାକୁ ବିନା ବାଧାରେ ପଶିଯିବେ ଏବଂ ତା'ପରେ ମନ୍ତ୍ରୀ ମହାଶୟ ଭାଇସ୍-ଚାନ୍‌ସେଲର, ପ୍ରିନ୍‌ସିପାଲ ବା ହେଡ଼ମାଷ୍ଟରଙ୍କୁ ପିଲାଙ୍କର ସମାନ ଭାବରେ ବିଚାର କରିବେ,—ଏ ବୀଭତ୍ସ, ଅଶୋଭନୀୟ, ଘୋର ବର୍ବର ଦୃଶ୍ୟ ଯେ ପର୍ଯ୍ୟନ୍ତ ଏ ଦେଶରେ ଦେଖା ଦେଉଥିବ, ସେ ପର୍ଯ୍ୟନ୍ତ ଏ ଦେଶରେ କୌଣସି ଶିକ୍ଷାନୁଷ୍ଠାନ ଯେ ଶିକ୍ଷାନୁଷ୍ଠାନ ନ ରହି, ରହିବ ରାଜନୈତିକ ଗୋଶାଳା, ଏହା ନିଶ୍ଚିତ କଥା । କୌଣସି ସଭ୍ୟ ଉନ୍ନତ ଦେଶରେ ଏ ଦୃଶ୍ୟ ଦେଖାଯାଏ ନାହିଁ ।

ଶିକ୍ଷାୟତନ ଗୁଡ଼ିକୁ ଆମେ ନିଜେ ସ୍ୱୟଂ-ନିର୍ଭର, ସ୍ୱୟଂ ସମ୍ପୂର୍ଣ୍ଣ ଓ ମର୍ଯ୍ୟାଦାବନ୍ତ ଯଦି ନ ରଖୁ, ତେବେ ମାଷ୍ଟ୍ରେ ବା ଲେକ୍‌ଚରର ବା ପ୍ରିନ୍‌ସିପାଲ କ'ଣ କରି ପାରିବେ ? ଏହା କରିବାକୁ ହେଲେ, ଛାତ୍ର ସମ୍ପୃକ୍ତ ସେମାନଙ୍କର ନିଷ୍ପତ୍ତିକୁ ଶେଷ କଥା ବୋଲି ଧରିବାକୁ ହେବ । ନାନ୍ୟଃ ପନ୍ଥା ବିଦ୍ୟତେଽୟନାୟ । କୌଣସି ଏକ ବିଦ୍ୟାନୁଷ୍ଠାନରେ, କିଛି ଗଣ୍ଡଗୋଳ ଦେଖାଗଲା ମାତ୍ରେ, ଗୋଟିଏ ପଟୁ କମ୍ୟୁନିଷ୍ଟ, ଆଉ

ଏନ୍. ଏସ୍. ୟୁ. ଏସ୍. ପି, ଆରପଟି ବା କଂଗ୍ରେସ,—ଏ ନେତା ସବୁ କପର ହାଜର ହୋଇ ଯାଉଛନ୍ତି ? ସେଠି ତ ଶିକ୍ଷକ ଅଛନ୍ତି, ପ୍ରିନ୍‌ସିପାଲ ଅଛନ୍ତି ଏବଂ ସେମାନଙ୍କର ତ ପୁଣି ଏକା ସ୍ୱତନ୍ତ୍ର ଡିପାର୍ଟମେଣ୍ଟ ଅଛି । ସେହିମାନଙ୍କୁ ନିଜର ସମସ୍ୟା ନିଜେ ସମାଧାନ କରିବାକୁ ଛାଡ଼ି ଦେଉ ନା କାହିଁ ? ନିଜ ନିଜ ଶିକ୍ଷକ, ପ୍ରିନ୍‌ସିପାଲ, ହେଡ଼ମାଷ୍ଟର ବା ଡିପାର୍ଟମେଣ୍ଟ ମୁଣ୍ଡ ଉପରେ, ପିଲାଏ, ମନ୍ତ୍ରୀ ବା ନେତାଙ୍କ ନିକଟକୁ ଧାଇଁ ଆସିବାକୁ ଦିଆ-ଯାଉଛି ବା କାହିଁ ?

## ଆମେରିକାରେ ଶିକ୍ଷକର ସମ୍ମାନ

ସମଗ୍ର ବିଶ୍ୱର ଧାରଣା ଯେ ଯୁକ୍ତରାଷ୍ଟ୍ର ଆମେରିକା ହେଲା ସ୍ୱାଧୀନତାର ସ୍ୱର୍ଗ । ପ୍ରକୃତରେ ମଧ୍ୟ ସେ ରାଜ୍ୟ ସେହିପରି । କିନ୍ତୁ ସେ ରାଜ୍ୟରେ ମଧ୍ୟ ଶିକ୍ଷକ ଓ ଶିକ୍ଷାଯତନର ମର୍ଯ୍ୟାଦା ପ୍ରତି ପ୍ରତ୍ୟେକ ନାଗରିକ କିପରି ପରିପୂର୍ଣ୍ଣ ସଚେତନ ତାହାର ଏକ ଜୀବନ୍ତ ଉଦାହରଣ ଏଠାରେ ପାଠକମାନଙ୍କ ସମ୍ମୁଖରେ ପରିବେଷିତ କରି ରଖିଛୁ । ଆମେରିକାର ବିଶ୍ୱ ପ୍ରସିଦ୍ଧ ମାଗାଜିନ୍ ରିଡ଼ର୍‌ସ୍ ଡାଇଜେଷ୍ଟର ୧୯୬୭, ଜୁଲାଇ ସଂଖ୍ୟାରେ ପ୍ରକାଶିତ ଜଣୈକ ହିଚିବନ୍ତ ଆମେରିକାନର ଆତ୍ମଚରିତର ଚୁମ୍ବକ-ବିବରଣରୁ ଏହା ଉଦ୍ଧାର କରି ଦିଆ ଯାଉଛି—

"ଆମ ମନରେ ଏହି ଦୃଢ଼ ଧାରଣା ଜାଗ୍ରତ କରାଇ ଦିଆ ଯାଇଥିଲା ଯେ, ଶିକ୍ଷକ ପ୍ରମାଦହୀନ ବ୍ୟକ୍ତି ଓ ଅସାଧାରଣ ବ୍ୟକ୍ତି । ଶିକ୍ଷକଙ୍କୁ ଆମେ ବନ୍ଧୁ, କୁଟୁମ୍ବିକ, ବା ସାଧାରଣ ପରିଚିତ ବ୍ୟକ୍ତି ବୋଲି ମନେ ଯେପରି ନ କରୁ । ଜଣେ ଶିକ୍ଷକଙ୍କୁ ରାସ୍ତାରେ ଭେଟି ପକାଇଲେ, ଆମ ମା'ମାନେ, ଯାହା କରୁଥାନ୍ତୁ ପଛକେ, କାମ ବନ୍ଦ କରି, ମୁଣ୍ଡ ନୁଆଁଇ, ତାଙ୍କୁ ସମ୍ମାନ ପ୍ରଦର୍ଶନ କରୁଥିଲେ । ସେହିପରି ଜଣେ ଶିକ୍ଷୟିତ୍ରୀଙ୍କୁ ଭେଟିଲେ ଆମ ବାପାମାନେ ତାଙ୍କ ଆଡ଼କୁ ସସମ୍ମାନ ଟୋପି ଉତ୍ତୋଳନ କରୁଥିଲେ, ଯାହାକି ସେମାନେ ସାଧାରଣତଃ ଅନ୍ୟ କାହା ପ୍ରତି କରିବାର ଦେଖା ଯାଉ ନ ଥିଲା । ଶିକ୍ଷକ ରହିଥିଲେ ପିତାମାତାଙ୍କ ଉପରେ ଏବଂ କେବଳ ସ୍ୱୟଂ ଈଶ୍ୱରଙ୍କ ଠିକଏ ନିମ୍ନରେ । ସେହି ଯୋଗୁଁ ମଧ୍ୟ ଆମେ ତାଙ୍କୁ ସେହି ପ୍ରକାର ଭୟ ମିଶ୍ରିତ ଭକ୍ତି ଦେଖାଉ ଥାଉଁ । × × × ଇସ୍କୁଲରେ କୌଣସି ବିଷୟରେ ଖରାପ ରିପୋର୍ଟ ବା ମାର୍କ ପାଇଥିବାର ଦେଖିଲେଇ ମୋ ମା ଦୁଃଖରେ ଅଭିଭୂତ ହୋଇ ଚିତ୍କାର କରି ଉଠୁଥିଲେ "ହାୟ, ଏ କ'ଣ ହେଲା ! ଶେଷରେ ଆମକୁ ଏହା ଦେଖିବାକୁ ପଡ଼ିଲା ।"

ପାଠକେ, ଯେଉଁ ଜାତି, ଶିକ୍ଷା, ଶିକ୍ଷକ ଓ ଶିକ୍ଷାସୂଚନକୁ ଏହି ପ୍ରକାର ମର୍ଯ୍ୟାଦା ଦେଇପାରେ, ଜାଣିରଖ ଯେ, ସେହି ଜାତିହିଁ ପୃଥିବୀରେ ସବୁଠାରୁ ଧନୀ, ଦାତା ଓ ଶକ୍ତିଶାଳୀ ହୋଇ ଦଣ୍ଡାୟମାନ ହୁଏ ।

ଅନ୍ୟ ପକ୍ଷରେ, ଆମେ ଆଜ କାହିଁକି ଋଣଗ୍ରସ୍ତ, ଭିକ୍ଷୁକ, ବିଶୃଙ୍ଖଳ, ଅନପୂଣ, ବନ୍ଧୁହୀନ, ପରାଜିତ ଓ ଅସ୍ତବ୍ୟସ୍ତ, ପାଠକ ତାର ବିଚାର ମଧ୍ୟ ଆପଣ ନିଜେ କରନ୍ତୁ ।

ଶେଷରେ କୋଠାରୀ କମିଶନ ଆମର ସମଗ୍ର ଶିକ୍ଷା ବ୍ୟବସ୍ଥାର କି ଲକ୍ଷ୍ୟ ଓ ଆଦର୍ଶ ହେବା ଉଚିତ ତାହା ଯେପରି ନିର୍ଦ୍ଦେଶ ଦେଇଛନ୍ତି, ତାହାହିଁ ପାଠକମାନଙ୍କ ଆଗରେ ପରିବେଷଣ କରି, ବିଦାୟ ନେଉଛୁ ।

( ୫ )

# କୋଠାରି-କମିଶନ ରିପୋର୍ଟରେ ସୂଚିତ

## ଭାରତୀୟ ଶିକ୍ଷା ବ୍ୟବସ୍ଥାର ଲକ୍ଷ୍ୟ ଓ ଆଦର୍ଶ ସବୁ *

୧ । ଶିକ୍ଷା ବ୍ୟବସ୍ଥାରେ ସବୁଠାରୁ ମୁଖ୍ୟ ଓ ତୁରନ୍ତ ଆବଶ୍ୟକତା ହେଲା, ତାକୁ ଏପରି ଭାବରେ ରୂପାନ୍ତରିତ କରାଯିବ, ଯେପରି କି ତାହା ଜାତୀୟ ଜୀବନ, ପ୍ରୟୋଜନ ଓ ଅଭିଳାଷ ସହିତ ସମ୍ପୃକ୍ତ ରହି ଜାତିର ସାମାଜିକ, ସାଂସ୍କୃତିକ ଓ ଆର୍ଥିକ ରୂପାନ୍ତରୀକରଣରେ ଏହା ଶକ୍ତିଶାଳୀ ହୋଇ ଉଠେ ଏବଂ ସେହି ଭାବରେ ଏହା ବାସ୍ତବରେ ପରିଣତ କରିପାରେ ଜାତୀୟ ଲକ୍ଷ୍ୟ ସବୁକୁ । ଏହି ଉଦ୍ଦେଶ୍ୟସିଦ୍ଧି ପାଇଁ, ଶିକ୍ଷା-ବ୍ୟବସ୍ଥା ଏପରି ହେବା ଉଚିତ, ଯାହାଦ୍ୱାରା ଦେଶର ଉତ୍ପାଦନ ବୃଦ୍ଧି ପାଇବ, ଦେଶରେ ସାମାଜିକ ଓ ଜାତୀୟ ଏକୀକରଣ ପ୍ରତିଷ୍ଠିତ ହେବ, ଦେଶର ଆଧୁନିକତାକୁ ତ୍ୱରଗାମୀ କରାଇବ ଏବଂ ଦେଶରେ ସାମାଜିକ, ନୈତିକ ଏବଂ ଆଧ୍ୟାତ୍ମିକ ମୂଲ୍ୟଗୁଡ଼ିକ ଅଭ୍ୟାସିତ ହେବ ।

୨ । ଶିକ୍ଷା ବ୍ୟବସ୍ଥାକୁ ଉତ୍ପାଦନାଭିମୁଖୀ କରାଇବା ପାଇଁ ନିମ୍ନଲିଖିତ ଯୋଜନା ଆବଶ୍ୟକ ହେବ—

---

* କୋଠାରୀ କମିସନ୍ ରିପୋର୍ଟର ଶେଷରେ ଥିବା 'ସମାହାର' ବା ସାରାଂଶରୁ ଏହା ରିପୋର୍ଟର ବିସ୍ତୃତ-ଲିଖିତ ପ୍ରଥମ ଅଧ୍ୟାୟର ସାର-କଥାର ଅନୁବାଦ ।

(କ) ସ୍କୁଲ-ପାଠରେ ବିଜ୍ଞାନ ଶିକ୍ଷା ଅପରିହାର୍ଯ୍ୟ ଅଙ୍ଗ ହୋଇ ରହିବ ଏବଂ କ୍ରମେ ବିଶ୍ୱବିଦ୍ୟାଳୟ ସ୍ତରରେ ମଧ୍ୟ ଏହା ପ୍ରତ୍ୟେକ ଶିକ୍ଷଣୀୟ ବିଦ୍ୟାର ଅଂଶ ହୋଇ ରହିବ ।

(ଖ) ସ୍କୁଲ ଓ କଲେଜ ସବୁ ସ୍ତରରେ 'କର୍ମାନୁଭୂତି'କୁ ପାଠ-ପଢ଼ା ସହିତ ଅଙ୍ଗାଙ୍ଗୀ ଭାବରେ ଯୋଡ଼ି ରଖାଯିବ ।

(ଗ) ପୁଣି ବିଦ୍ୟାର୍ଥୀମାନଙ୍କର ଏହି କର୍ମାନୁଭୂତିକୁ ନବକାଳାନୁଯାୟୀ ଅଧିକରୁ ଅଧିକ ଯନ୍ତ୍ରାଭିମୁଖୀ ରଖାଯିବ ଏବଂ ବିଶେଷ କରି ଆମର କୃଷିପ୍ରଣାଳୀ ସମ୍ପର୍କରେ ।

(ଘ) ମାଧ୍ୟମିକ ଶିକ୍ଷାକୁ ଅଧିକରୁ ଅଧିକ ବ୍ୟବସାୟାଭିମୁଖୀ କରାଯିବ ଏବଂ ଉଚ୍ଚତର ଶିକ୍ଷା ବ୍ୟବସ୍ଥାରେ ଅଧିକରୁ ଅଧିକ କୃଷି ଓ ଯାନ୍ତ୍ରିକ ଉତ୍ପାଦନ ଉପରେ ଦୃଷ୍ଟି ଦିଆଯିବ ।

## ୩ । ସାମାଜିକ ଓ ଜାତୀୟ ଐକ୍ୟ-ବିଧାନ

ଜାତୀୟ ଚେତନା ଓ ଜାତୀୟ ଐକ୍ୟର ଅଭିବୃଦ୍ଧି ପାଇଁ ନିମ୍ନଲିଖିତ ପନ୍ଥା ଗ୍ରହଣ କରିବାକୁ ହେବ—

(କ) ସକଳ ପ୍ରକାର ଗୋଷ୍ଠୀଗତ ବିଦ୍ୟାଳୟ ସବୁକୁ ଉଠାଇ ଦେଇ ସମଗ୍ର ଦେଶରେ ସମଗ୍ର ଜାତିର ସବୁ ପିଲାଙ୍କ ପାଇଁ ଗୋଟିଏ ପ୍ରକାର 'କମନ୍ ସ୍କୁଲ୍' ବା 'ସାଧାରଣ ବିଦ୍ୟାଳୟ'ହିଁ ପ୍ରତିଷ୍ଠିତ ହେବ । ଏହି ବ୍ୟବସ୍ଥା ତୁରନ୍ତ ଆରମ୍ଭ ହୋଇ ଯେପରି ଆଗାମୀ କୋଡ଼ିଏ ବର୍ଷ ଭିତରେ ପରିପୂର୍ଣ୍ଣତା ଲାଭ କରେ ।

## (ଖ) ସାମାଜିକ ଓ ଜାତୀୟ ସେବା

ସ୍କୁଲ ଓ କଲେଜ ସବୁ ସ୍ତରରେ ସକଳ ବିଦ୍ୟାର୍ଥୀଙ୍କ ପ୍ରତି ସାମାଜିକ ଓ ଜାତୀୟ ସେବା ବାଧ୍ୟତାମୂଳକ ହୋଇ ରହିବ । ବିଦ୍ୟାଧ୍ୟୟନ ସହିତହିଁ ଏହି ସେବା-ଯୋଜନା ସମ-କାଳୀନ ଭାବରେ ଚାଲୁ ରହିବ ।

ପ୍ରାଇମେରି ସ୍କୁଲ ସ୍ତରରେ ଏହି ସେବା-ଯୋଜନା ବେସିକ୍ ସ୍କୁଲ ଯୋଜନାନୁଯାୟୀ ହେବ ।

ମାଧ୍ୟମିକ ସ୍ତରରେ, ନିମ୍ନ-ତଳରେ ଏହାର ବ୍ୟାପ୍ତି ରହିବ ୩୦ ଦିନ ପାଇଁ ଏବଂ ଉପର-ତଳରେ ୬୦ ଦିନ ପାଇଁ (ବର୍ଷକୁ ୧୦ ଦିନ ଧରି) ଏବଂ ଏହା ପ୍ରତ୍ୟେକ ବିଦ୍ୟାର୍ଥୀ ପାଇଁ ହେବ ବାଧ୍ୟତାମୂଳକ । ଏହି ସେବାଭ୍ୟାସ ଏକା ଥରକେ ବା ଥର ଥର କରି ମଧ୍ୟ କରାଯାଇ ପାରେ ।

ପ୍ରାକ୍-ଡିଗ୍ରୀ ଶ୍ରେଣୀମାନଙ୍କରେ ସେବାଯୋଜନାର ସମଗ୍ର କାଳ ହେବ ୬୦ ଦିନ, ଏହା ଥରକେ ବା ଥର ଥରକେ କରାଯିବ କିନ୍ତୁ ପ୍ରତ୍ୟେକ ବିଦ୍ୟାର୍ଥୀ ପାଇଁ ବାଧ୍ୟତାମୂଳକ ହେବ ।

ପ୍ରତ୍ୟେକ ବିଦ୍ୟାନୁଷ୍ଠାନ ତାର ନିଜର ସ୍ୱତନ୍ତ୍ର ସେବା-ଯୋଜନା ଓ ବ୍ୟବସ୍ଥା ଠିଆ କରେଇବେ, ଯେପରିକି ତାର ପ୍ରତ୍ୟେକ ବିଦ୍ୟାର୍ଥୀ, ପଠନ-କାଳ ଭିତରେ, କୌଣସି ନା କୌଣସି ଭାବରେ, ସେବା-ଯୋଜନା ସହିତ ସଂପୃକ୍ତ ରହିବେ ।

ପ୍ରତି ରାଜ୍ୟର ପ୍ରତି ଜିଲ୍ଲାରେ ବିଦ୍ୟାର୍ଥୀମାନଙ୍କର ସେବାଭ୍ୟାସ ଲାଗି ସ୍ୱତନ୍ତ୍ର ବ୍ୟବସ୍ଥା ଠିଆ କରାଇବାକୁ ହେବ । ଯେଉଁ ବିଦ୍ୟାର୍ଥୀମାନେ ନିଜ ନିଜର ଅନୁଷ୍ଠାନର ସେବା-ଯୋଜନାରେ ଯୋଗଦେଇ ପାରି ନାହାନ୍ତି, ସେମାନେ ଏଥିରେ ଯୋଗ ଦେବାକୁ ବାଧ୍ୟ ହେବେ ।

ଚତୁର୍ଥ ଯୋଜନାର ଶେଷ ପର୍ଯ୍ୟନ୍ତ ଏବର ଏନ୍. ସି. ସି. ଶିକ୍ଷାବ୍ୟବସ୍ଥା ଚାଲୁ ରହିବ । ଅଣ୍ଡର ଗ୍ରାଜୁଏଟ୍ ସ୍ତରରେ ଏହି ଶିକ୍ଷା କ୍ରମାଗତ ୬୦ ଦିନ ଧରି କିପରି ଦିଆଯାଇ ପାରିବ, ତାହାର ସମ୍ଭାବ୍ୟତା ଖୋଜାଯିବ । ଇତିମଧ୍ୟରେ ସେବା-ଯୋଜନା ସବୁ ବ୍ୟବସ୍ଥିତ ହୋଇ ସାରିଲା ପରେ ଏନ୍ ସି. ସି. କୁ ଇଚ୍ଛାଧୀନ କରି ଦିଆଯିବ ।

## ଭାଷାନୀତି

କମିସନ ମତ ଦିଅନ୍ତି ଯେ, ଶିକ୍ଷା-ମାଧ୍ୟମ ବିଷୟରେ ଏକ ସୁଚିନ୍ତିତ ଭାଷା-ନୀତି ଆମର ସାମାଜିକ ଓ ଜାତୀୟ ଐକ୍ୟ ଆଣିବା ଦିଗରେ ଯଥେଷ୍ଟ ସାହାଯ୍ୟ କରିବ ।

ଉଭୟ ସ୍କୁଲ ଓ କଲେଜ ସ୍ତରରେ ଶିକ୍ଷା-ମାଧ୍ୟମ ଭାବରେ ବିଦ୍ୟାର୍ଥୀର ମାତୃଭାଷାର ସ୍ଥାନ ଅବିବାଦୀ । ଅଧିକନ୍ତୁ, ଶିକ୍ଷାବ୍ୟବସ୍ଥାର ତଳ ଓ ଉପର, ଉଭୟ ସ୍ତରର ଶିକ୍ଷା-ମାଧ୍ୟମର ଭାଷା ଏକ ହେବା

ରହିବ । ତେଣୁ ଆଞ୍ଚଳିକ ଭାଷାଗୁଡ଼ିକ ଉଚ୍ଚ ଶିକ୍ଷାର ମାଧ୍ୟମ ଭାବରେ ସ୍ଥାପିତ ହେବା ଉଚିତ ।

ୟୁନିଭର୍ସିଟି ଗ୍ରାଣ୍ଟ୍ସ୍ କମିସନଙ୍କ ସହିତ ପ୍ରତିଟି ବା ଦଳଭୁକ୍ତ ବିଶ୍ୱବିଦ୍ୟାଳୟ ସବୁ ଏକଜୁଟ ବିଚାର କରି କେଉଁ ଆଞ୍ଚଳିକ ଭାଷାକୁ କିପରି ଉଚ୍ଚଶିକ୍ଷାର ମାଧ୍ୟମ କରିବେ ତାହା ସ୍ଥିର କରିବେ ଏବଂ ଏହି ପରିବର୍ତ୍ତନ ଆସ୍ତେ ଆସ୍ତେ ଦଶ ବର୍ଷ ଭିତରେ କରିନେବାକୁ ହେବ ।

ଏହି ଦୃଷ୍ଟିରୁ ଆଞ୍ଚଳିକ ଭାଷାମାନଙ୍କରେ ଯଥୋପଯୁକ୍ତ ଏବଂ ବିଶେଷ କରି ବୈଜ୍ଞାନିକ ଓ ଶୈଳ୍ପିକ ପୁସ୍ତକାବଳି ପ୍ରକାଶ କରିବାକୁ ଶକ୍ତିଶାଳୀ ଉଦ୍ୟମ ଠିଆ କରିବାକୁ ହେବ । ଏହା ହେବ ଏକାନ୍ତରେ ବିଶ୍ୱବିଦ୍ୟାଳୟ ମାନଙ୍କର ଦାୟିତ୍ୱ ଏବଂ ଏଥିରେ ୟୁନିଭର୍ସିଟି ଗ୍ରାଣ୍ଟସ୍ କମିସନ ସାହାଯ୍ୟ କରିବେ ।

ସର୍ବ-ଭାରତୀୟ ଶିକ୍ଷାନୁଷ୍ଠାନ ଗୁଡ଼ିକ କିନ୍ତୁ ଇଂରାଜୀକୁ ହିଁ ବର୍ତ୍ତମାନ ପାଇଁ ଶିକ୍ଷା-ମାଧ୍ୟମ ରୂପେ ରଖିବେ । ଆଖରକୁ ହିନ୍ଦି ଇଂରାଜିର ସ୍ଥାନ ଉପ ଅଧିକାର କରିବ, ଏହା ବରାବର ଆଖିରେ ରଖିବାକୁ ହେବ, କିନ୍ତୁ ଏହା ହେଲାବେଳେ ଅଣ-ହିନ୍ଦୀ-ଭାଷୀଙ୍କ ସ୍ୱାର୍ଥରକ୍ଷାର୍ଥେ କେତେକ ରକ୍ଷା-କବଚ ବ୍ୟବସ୍ଥା ରଖିବା ଉଚିତ ।

ସମ୍ପୃକ୍ତ ରାଜ୍ୟାଞ୍ଚଳମାନଙ୍କ ପାଇଁ ଆଞ୍ଚଳିକ ଭାଷା ସବୁ ଶାସନିକ ମାଧ୍ୟମ ହେବା ମଧ୍ୟ ତୁରନ୍ତ ଆବଶ୍ୟକ । ଯେପରି କି, ଆଞ୍ଚଳିକ ଭାଷାରେ ତାଲିମ୍ ପ୍ରାପ୍ତ ବିଦ୍ୟାର୍ଥୀ, ଭବିଷ୍ୟତର ଚାକିରି ବାକିରିରୁ ବଞ୍ଚିତ ନ ହୁଅନ୍ତି ।

କିନ୍ତୁ ଇଂରାଜି-ଭାଷା-ଶିକ୍ଷା, ଏ ବିପରି ଶିକ୍ଷାବ୍ୟବସ୍ଥାର ନିମ୍ନ-ସ୍ତରରୁହିଁ ଚାଲୁ ରହିବ । ଅନ୍ୟାନ୍ୟ ଆନ୍ତର୍ଜାତିକ ଭାଷାଧ୍ୟୟନ ପାଇଁ ମଧ୍ୟଉତ୍ସାହ ଦିଆଯିବା ଉଚିତ । ବିଶେଷ କରି ରୁଷୀୟ ଭାଷା ଓ ଏହିପରି କେତେକ ଆନ୍ତର୍ଜାତିକ ଭାଷାମାନଙ୍କୁ ଶିକ୍ଷା-ମାଧ୍ୟମ ରଖି, ସମଗ୍ର ଦେଶରେ ସ୍କୁଲ୍ ଓ କଲେଜ ସ୍ତରୀୟ କେତୋଟି ଅନୁଷ୍ଠାନ ଠିଆ କରେଇବା ଉଚିତ ।

ଜ୍ଞାନ-ଗବେଷଣା ଓ ଆନ୍ତର୍ରାଜ୍ୟ ଭାବବିନିମୟ ପାଇଁ ଇଂରାଜୀହିଁ ଭାରତର ଯୋଗାଣ ଭାଷା ହୋଇ ରହିବ । କିନ୍ତୁ ଏହା ମଧ୍ୟ ସତ୍ୟ କଥା ଯେ, ଇଂରାଜୀ ଭାଷାର ଏ ଭୂମିକାର ଉପକାର ଦେଶର ଅଧିକ ସଂଖ୍ୟକ ଲୋକ କେବେହେଲେ ପାଇ ପାରିବେ ନାହିଁ । ଏ ଭୂମିକା ପାଇଁ ଯଥାର୍ଥ

ଦ୍ୱାରା କେବଳ ହିନ୍ଦୀର ଏବଂ ଯଥାସମୟରେ ଏହା ଘଟିବ । ଯେହେତୁ ହିନ୍ଦୀ କେନ୍ଦ୍ର-ଶାସନର ଅଫିସିଆଲ ମାଧ୍ୟମ ଏବଂ ଭାରତୀୟ ଜନତାର ପାରସ୍ପରିକ ମାଧ୍ୟମ, ଅଣହିନ୍ଦୀ ରାଜ୍ୟମାନଙ୍କରେ ହିନ୍ଦୀ-ଶିକ୍ଷାର ବ୍ୟାପକ ବ୍ୟବସ୍ଥା ତୁରନ୍ତ ହେବା ଉଚିତ ।

ରାଜ୍ୟ ରାଜ୍ୟ ଭିତରେ ପାରସ୍ପରିକ ଭାବ-ବିନିମୟ ପାଇଁ ହିନ୍ଦୀ ଛଡ଼ା ମଧ୍ୟ ଅନ୍ୟ ଭାଷାର ବ୍ୟବସ୍ଥା ରହିବା ଉଚିତ । ପ୍ରତ୍ୟେକ ଭାଷାଞ୍ଚଳରେ ଏପରି କେତେକ ଲୋକ ରହିବା ଉଚିତ, ଯେଉଁମାନେ ଅନ୍ୟ ଆଞ୍ଚଳିକ ଭାରତୀୟ ଭାଷା ଓ ସେ ସବୁର ସାହିତ୍ୟରେ ଯେ ଅବଗାହିତ ଥିବେ କେବଳ ନୁହେଁ, ସେହି ସେହି ଭାଷାକୁ କିଛି ଦେବା ଭଳିଆ ଯୋଗ୍ୟତା ମଧ୍ୟ ସେମାନଙ୍କର ଥିବ । ଏଥିପାଇଁ ସ୍କୁଲ୍ ଓ କଲେଜ ଉଭୟ ସ୍ତରରେ ସୁବ୍ୟବସ୍ଥା ଠିଆ କରିବାକୁ ହେବ । ଏହା ଛଡ଼ା ପ୍ରତି ଭାରତୀୟ ବିଶ୍ୱବିଦ୍ୟାଳୟରେ, ସମ୍ପୃକ୍ତ ରାଜ୍ୟାଞ୍ଚଳର ଭାଷା ବ୍ୟତୀତ ଅନ୍ୟାନ୍ୟ ଆଧୁନିକ ଭାରତୀୟ ଭାଷାମାନଙ୍କର ଅଧ୍ୟାପନା ଓ ଅନୁଶୀଳନ ପାଇଁ ଏକ ଏକ ଶକ୍ତିଶାଳୀ ବିଭାଗ ଖୋଲିବାକୁ ହେବ । ବି. ଏ. ଓ ଏମ୍. ଏ. ପ୍ରୋଗ୍ରାମରେ ଦୁଇଟି ଆଧୁନିକ ଭାରତୀୟ ଭାଷାର ଚର୍ଚ୍ଚା ବାଞ୍ଛନୀୟ ହେବ ।

## ଜାତୀୟ-ଚେତନାର ଅଭିବୃଦ୍ଧି

ଭାରତୀୟ ଶିକ୍ଷାବ୍ୟବସ୍ଥାର ଏକ ମୁଖ୍ୟ ଲକ୍ଷ୍ୟ ହେବ ମହାଭାରତୀୟ ଜାତୀୟ ଚେତନାର ଅଭିବୃଦ୍ଧି । ଏହା ଦୁଇଟା ଉପାୟରେ ସିଦ୍ଧ ହେବ । ଏକ ହେଲ, ଆମର ଜାତୀୟ ଐତିହ୍ୟ କ'ଣ ଓ ତାର ମୂଲ୍ୟ କ'ଣ ତାହା ସ୍ପଷ୍ଟ କରି ଜାଣିବା । ଦ୍ୱିତୀୟରେ, ଆମର ଜାତୀୟ ଲକ୍ଷ୍ୟ ଗୁଡ଼ିକ ସମ୍ପର୍କରେ ଅଟଳ ଓ ଶକ୍ତିମନ୍ତ ବିଶ୍ୱାସ ରଖିବା ।

(କ) ପ୍ରଥମ ଲକ୍ଷ୍ୟଟି ପୂରଣ ହେବ ଆମର ସ୍କୁଲ୍ କଲେଜମାନଙ୍କରେ ଭାରତର ଇତିହାସ, ଦର୍ଶନ ଧର୍ମ, ଭାଷା ଓ ସାହିତ୍ୟମାନଙ୍କର ସମ୍ୟକ ଅଧ୍ୟାପନା ଦ୍ୱାରା ଏବଂ ବିଦ୍ୟାର୍ଥୀମାନଙ୍କୁ ଭାରତର କଳା, ସ୍ଥାପତ୍ୟ ଶିଳ୍ପ, ନୃତ୍ୟ, ସଙ୍ଗୀତ ଓ ନାଟକ ସହିତ ପରିଚିତ କରାଇବା ଦ୍ୱାରା । ସ୍ୱାତନ୍ତ୍ର୍ୟ, ରାଜ୍ୟ ରାଜ୍ୟ ଭିତରେ ଥିବା ଅନପେକ୍ଷ ବା ବିରାଗର ଭାବକୁ ଭାଙ୍ଗିବାପାଇଁ, ଏକ ଅଞ୍ଚଳର କରିକ୍ୟୁଲମ୍ ଭିତରେ ଭାରତର ଅନ୍ୟ

ଅଞ୍ଚଳମାନଙ୍କର ଇତିହାସ ସାହିତ୍ୟାଦି ଭର୍ତ୍ତି କରିବା, ଭିନ୍ନ ଭିନ୍ନ ଅଞ୍ଚଳମାନେ ପରସ୍ପର ଭିତରେ ଶିକ୍ଷକ-ଅଧ୍ୟାପକମାନଙ୍କର ବିନିମୟ କରିବା, ଭିନ୍ନ ଭିନ୍ନ ଅଞ୍ଚଳର ବିଦ୍ୟାର୍ଥୀମାନଙ୍କ ଭିତରେ ଭ୍ରାତୃତ୍ୱ ଓ ସହଯୋଗୀ ଭାବ ଜାଗ୍ରତ କରିବା ଏବଂ ଏକ ଅଞ୍ଚଳର ଛାତ୍ର ଓ ଶିକ୍ଷକ ଅନ୍ୟ ଅଞ୍ଚଳମାନଙ୍କରେ ଅବସର-ଶିବିର ପକେଇବା ଇତ୍ୟାଦି ମଧ୍ୟ ଅଭ୍ୟାସିତ ହେବା ଉଚିତ ।

(ଖ) ଆମର ଗୌରବମୟ ଭବିଷ୍ୟତରେ ଅଟଳ ବିଶ୍ୱାସ ଜାଗ୍ରତ କରେଇବା ପାଇଁ ଆମର ଭବିଷ୍ୟତ ନାଗରିକଙ୍କୁ ସ୍ପଷ୍ଟ ବୁଝାଇ ଦେବାକୁ ପଡ଼ିବ, ଆମର ସମ୍ବିଧାନର ମୁଖ୍ୟ ଆଭିମୁଖ୍ୟ, ତାର ଉପକ୍ରମଣିକାରେ ରଖାଯାଇଥିବା ଉଦାର ମାନବିକ ଆଦର୍ଶ ସବୁ ଏବଂ ଯେଉଁ ଗଣତାନ୍ତ୍ରିକ ସମାଜବାଦୀ ବସ୍ତ୍ର ଆମେ ଗଠନ କରିବାକୁ ସ୍ଥିର କରିଛୁ, ତାର ତତ୍ତ୍ୱ ଓ ମହତ୍ତ୍ୱ ଏବଂ ସେହି ଲକ୍ଷ୍ୟ ଆଡ଼କୁ ଆମେ କିପରି ଗତି କରୁଛୁ, ଆମର ପଞ୍ଚବାର୍ଷିକ ଯୋଜନାମାନଙ୍କ ଦେଇ ।

(ଗ) ପୁଣି ଜାତୀୟ ଚେତନା ଓ ଆନ୍ତର୍ଜାତିକ ସଚେତନତା ଭିତରେ ଯେ କୌଣସି ବିରୋଧ ଥାଇ ନ ପାରେ ଏହା ମଧ୍ୟ ଆମର ପାଠ୍ୟକ୍ରମ ଓ ଅଧ୍ୟାପନା ଦେଇ ଆମକୁ ପ୍ରମାଣିତ କରିବାକୁ ହେବ ।

(ଘ) ଆମର ସ୍କୁଲ ଓ କଲେଜମାନଙ୍କରେ ସମଗ୍ର ବ୍ୟବସ୍ଥାରେ ଓ ପ୍ରତ୍ୟେକ ବିଭାଗରେ ଯେପରି ଗଣତାନ୍ତ୍ରିକ ଭାବଧାରଟି ଫୁଟି ଉଠୁଥିବ ।

## ଶିକ୍ଷାର ଆଧୁନୀକରଣ

ଆଜିର ଦୁନିଆରେ ଉଭୟ ଜ୍ଞାନ-ବିଜ୍ଞାନ ଓ ସାମାଜିକ ପରିବର୍ତ୍ତନ ପ୍ରଚଣ୍ଡ ଗତିରେ ଧାଇଁ ଚାଲିଛନ୍ତି । ଏହା ଦରକାର କରୁଛି, ଆମ ଶିକ୍ଷା-ବ୍ୟବସ୍ଥାର ଆମୂଳଚୂଳ ପରିବର୍ତ୍ତନ ।

ଶିକ୍ଷାବ୍ୟବସ୍ଥାର ଲକ୍ଷ୍ୟ ଆଜି ନୁହେଁ କାରଖାନାରୁ ବାହାରୁଥିବା ଶିଳ୍ପଜାତ ଦ୍ରବ୍ୟ ପରି, ପିଲଙ୍କୁ ପୂରା ପୂରି କରି ଗୋଟାଏ ଛାଞ୍ଚରେ କରି ବାହାର କରି ଦେବା । ଲକ୍ଷ୍ୟମଧ୍ୟ ନୁହେ ତାଙ୍କ ମୁଣ୍ଡରେ ଗୁଡ଼ାଏ ତଥା-କଥିତ ଜ୍ଞାନ ଭର୍ତ୍ତି କରି ଚାଲିବା । ଶିକ୍ଷାର ପ୍ରକୃତ ଲକ୍ଷ୍ୟ ହେଲା, ତରୁଣ ମନରେ ଜାଗ୍ରତ କରିବା ଜିଜ୍ଞାସା, ଜାଗ୍ରତ କରିବା ସମୁଚିତ ଆଗ୍ରହ ଏବଂ ମାନବିକ ସଂସ୍କୃତିର ଭିନ୍ନ ଭିନ୍ନ ମୂଲ୍ୟ ପାଇଁ ସଭ୍ୟଜନୋଚିତ ଶ୍ରଦ୍ଧା । ପୁଣି

ଲକ୍ଷ୍ୟ ମଧ୍ୟ ହେବ ଯେ, ତରୁଣମାନଙ୍କୁ ଏପରି ଗଢ଼ି ତୋଳିବା ଯେପରିକି ସେମାନେ ପରେ ସ୍ୱାଧୀନ ଭାବରେ ମୌଳିକ ଚିନ୍ତା କରି ପାରିବେ ଓ ସ୍ୱାଧୀନଭାବରେ ଗବେଷଣା ଓ ଆଲୋଚନା କରି ପାରିବେ ।

ଏହି ଲକ୍ଷ୍ୟ ଗ୍ରହଣ କଲେ ଆମକୁ ଆମର ଅଧ୍ୟାପନା-ପ୍ରଣାଳୀ ଏବଂ ଶିକ୍ଷକ-ତାଲିମ ବ୍ୟବସ୍ଥା, ଉଭୟକୁ ଆମୂଳଚୂଳ ପରିବର୍ତ୍ତନ କରିବାକୁ ହେବ ।

ଯେକୌଣସି ସମାଜ ନିଜକୁ ଆଧୁନୀକୃତ କରିବାକୁ ବସିଲେ ଆଗ ନିଜକୁ ସର୍ବତୋଭାବେରେ ଶିକ୍ଷିତ କରେଇବା ଉଚିତ । ଏ ଦିଗରେ ସାଧାରଣ ନାଗରିକଙ୍କୁ ଶିକ୍ଷିତ କରେଇବା ସାଥେ ସାଥେ, ସମାଜରେ, ସମାଜର ସକଳସ୍ତରରୁ ଆସିଥିବା ଏକ ବୁଦ୍ଧିଜୀବୀ ଗୋଷ୍ଠୀ ଠିଆ କରେଇବାକୁ ପଡ଼ିବ ଯେଉଁମାନଙ୍କର ଆନୁଗତ୍ୟ ଓ ଅଭିଳାଷ, ଆଶା କରିଥିବ ଏଇ ଭାରତର ମୃତ୍ତିକାରେ ।

## ସାମାଜିକ, ନୈତିକ ଓ ଆଧ୍ୟାତ୍ମିକ ମୂଲ୍ୟ

ଯେ କୌଣସି ଶିକ୍ଷାବ୍ୟବସ୍ଥା ବିଦ୍ୟାର୍ଥୀମାନଙ୍କ ଚିତ୍ତରେ ସାମାଜିକ, ନୈତିକ ଓ ଆଧ୍ୟାତ୍ମିକ ମୂଲ୍ୟ ସବୁକୁ ଦୃଢ଼ଭାବରେ ଆରୋପିତ କରି ରଖିବାର ଆଶା କରାଯାଏ । ଏହି ଲକ୍ଷ୍ୟରେ—

ଇଉନିଭର୍ସିଟି ଗ୍ରାଣ୍ଟସ୍ କମିଶନ୍ ଓ କମିଟି-ଅନ୍-ରିଲିଜସ୍-ଏଣ୍ଡ-ମୋରାଲ୍-ଇନ୍‌ସ୍ଟ୍ରାକଶନ୍ ଯେଉଁସବୁ ସୁପାରିଶ କରିଛନ୍ତି, ରାଜ୍ୟ ଓ କେନ୍ଦ୍ର ସରକାରମାନେ ସେମାନଙ୍କ ଅଧୀନରେ ଥିବା ପ୍ରତ୍ୟେକ ବିଦ୍ୟାନୁଷ୍ଠାନରେ ତାହା ଆନ୍ତରିକତାର ସହିତ ଅଧୀତ ଓ ଅଭ୍ୟାସିତ ହେବାର ଯେପରି ଦେଖିବେ । ଘରୋଇ ଅନୁଷ୍ଠାନ ଏ ସବୁ ମଧ୍ୟ ପାଳନ କରିବେ ।

ଏଥିପାଇଁ ସ୍ୱତନ୍ତ୍ର ପିରିଅଡ଼ ରଖାଯିବ । ଭିନ୍ନ ଭିନ୍ନ ଧର୍ମ-ଗୋଷ୍ଠୀର ଏଥିପାଇଁ ଯୋଗ୍ୟ ବିବେଚିତ ହେବା ଶିକ୍ଷକମାନେ ନିଜ ନିଜ ଧର୍ମ ଓ ସାମାଜିକ ବ୍ୟବହାର ଉପରେ ଶିକ୍ଷା ଦାନ କରିବେ । ଶିକ୍ଷକ-ତାଲିମ-କେନ୍ଦ୍ର ମାନଙ୍କରେ ଏଥିପାଇଁ ବିଶେଷ ବ୍ୟବସ୍ଥା ରହିବା ଉଚିତ ।

ପ୍ରତ୍ୟେକ ବିଶ୍ୱବିଦ୍ୟାଳୟର ଏକ ଏକ ତୁଳନାତ୍ମକ ଧର୍ମାଲୋଚନା-ବିଭାଗ ରହିବ । ଏହି ବିଭାଗ ସ୍କୁଲ୍-କଲେଜରେ ଏ ବିଷୟ ଉପରେ ଅଧ୍ୟାପିତ ହୋଇ ପାରିବ ତାର ସୂଚନା ଦେବେ ଏବଂ ସେ ସମ୍ପର୍କରେ ଉଭୟ ଛାତ୍ର ଓ ଶିକ୍ଷକଙ୍କ ପାଇଁ ଯାହା ପୁସ୍ତକ ଦରକାର ହେବ, ତାହା ପ୍ରକାଶ କରିବେ ।

ଭାରତବର୍ଷ ଏକ ବହୁ-ଧର୍ମୀୟ ଦେଶ । ଅଥଚ ଏହା ଏକ ଗଣତାନ୍ତ୍ରିକ ରାଷ୍ଟ୍ର । ତେଣୁ ଏହାର ଭିନ୍ନ ଭିନ୍ନ ଧର୍ମ ଗୋଷ୍ଠୀର ଲୋକେ ପରସ୍ପର ପ୍ରତି ଶ୍ରଦ୍ଧା-ସହାନୁଭୂତି ପୂର୍ଣ୍ଣ ବ୍ୟବହାର ଦେଖାଇବା ଉଚିତ । ତେଣୁ ଆମର ନାଗରିକତାର ପାଠ୍ୟକ୍ରମରେ ସମସ୍ତ ପ୍ରଧାନ ପ୍ରଧାନ ଧର୍ମମାନଙ୍କର ଉଦାର ବର୍ଣ୍ଣନା ବହନ କରି ଏକ ଆଲୋଚନାର ବ୍ୟବସ୍ଥା ସ୍କୁଲ୍ ଓ କଲେଜରେ ରହିବା ଉଚିତ । ସମଗ୍ର ଭାରତବର୍ଷ ପାଇଁ ଏ ସମ୍ପର୍କରେ ଏକ ପ୍ରକାର ପୁସ୍ତକ-ପର୍ଯ୍ୟାୟ ପ୍ରଚଳିତ ରହିବା ଆବଶ୍ୟକ ଏବଂ ସେ ପର୍ଯ୍ୟାୟ ପ୍ରତ୍ୟେକ ଧର୍ମରେ ଥିବା ଅନ୍ତର୍ନିହିତ ସାମ୍ୟ ଓ ପ୍ରତ୍ୟେକ ଉଦାର ମାନବିକ ଓ ନୈତିକ ଅଂଶଗୁଡ଼ିକୁ ତରୁଣମାନଙ୍କ ଆଗରେ ବିଶେଷ ଭାବରେ ପରିବେଷିତ କରିବାକୁ ଚେଷ୍ଟିତ ହେବେ । ଏହି ପର୍ଯ୍ୟାୟ ସର୍ବଭାରତୀୟ ସ୍ତରରେ ସୁଯୋଗ୍ୟ ବ୍ୟକ୍ତିମାନଙ୍କ ଦ୍ୱାରା ଲିଖିତ ଓ ସମ୍ପାଦିତ ହେବା ଉଚିତ ।

---